ଜାତୀୟ ଜୀବନ ଚରିତମାଳା

# ତୁଳସୀଦାସ

ଦେବେନ୍ଦ୍ର ସିଂହ

ଅନୁବାଦ

କୃଷ୍ଣଚନ୍ଦ୍ର ତ୍ରିପାଠୀ



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ପ୍ରଥମ ସଂସ୍କରଣ 1976 (ଶକାବ୍ଦ 1897)
ତୃତୀୟ ସଂସ୍କରଣ 1992 (ଶକାବ୍ଦ 1914)

ISBN 81-237-0002-4

TULSIDAS (Oriya)

ଟ 9.00

ନିର୍ଦ୍ଦେଶକ, ନ୍ୟାସନାଲ ବୁକ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ ପାର୍କ,
ନୂଆ ଦିଲ୍ଲୀ-110016 ଙ୍କଦ୍ୱାରା ପ୍ରକାଶିତ ।

# ବିଷୟ ସୂଚୀ

# 1 ଆଦ୍ୟ-ଜୀବନ

ସେକ୍ସପିଅର୍‌ଙ୍କ ଜୀବନର ଘଟଣା ସମ୍ବନ୍ଧରେ ଆମେ ଯେପରି ସାମାନ୍ୟ ଜାଣୁ, ସେଇପରି ତୁଳସୀଦାସଙ୍କ ଜୀବନର ଘଟଣା ସମ୍ପର୍କରେ ଆମର ଧାରଣା ମଧ୍ୟ ସାମାନ୍ୟ । ଜନଶ୍ରୁତି ବା ପୌରାଣିକ କାହାଣୀମାନଙ୍କୁ ଛାଡ଼ିଦେଲେ ପ୍ରାମାଣିକ କାଗଜପତ୍ର ସେମାନଙ୍କ ଜୀବନ ସମ୍ବନ୍ଧରେ ଯାହା ମିଳୁଛି, ତାହା ଆଶ୍ଚର୍ଯ୍ୟଜନକ ଭାବରେ ଅତି ସାମାନ୍ୟ । ସେମାନେ ପରସ୍ପରର ସମସାମୟିକ । ମହୀୟସୀ ରାଣୀ ଏଲିଜାବେଥ୍‌ଙ୍କ ସୁଦୀର୍ଘ ରାଜତ୍ୱ କାଳ ଭିତରେ ସେକ୍ସପିଅର୍ ତାଙ୍କ ଲେଖା ସବୁ ଲେଖିଥିଲେ । ସେହିପରି ତୁଳସୀ ଦାସ ଶ୍ରେଷ୍ଠ ନରପତି ଆକ୍‌ବରଙ୍କ ବିଶାଳ ସଂଗଠନମୟ ରାଜତ୍ୱରେ ଲେଖନୀ ଧାରଣ କରିଥିଲେ । ସେଇ ସମୟର ଶାସନାଧୀନରେ ଥିବା ଐତିହାସିକମାନେ ଏଇ ଦୁଇ ଲେଖକଙ୍କ ପ୍ରତି ଆଦୌ ଦୃଷ୍ଟି ଦେଇନାହାନ୍ତି । 'ଏମାନେ ଗୋଟିଏ ଯୁଗର ନୁହନ୍ତି, ସର୍ବଯୁଗୀୟ ।' ଆଧୁନିକ ଐତିହାସିକ ଭିନ୍‌ସେଣ୍ଟ ସ୍ମିଥ୍ ସାହେବ ତୁଳସୀ ଦାସଙ୍କ ଯୁଗ ସମ୍ବନ୍ଧରେ କିଛି ଉଲ୍ଲେଖ ନାହିଁ ବୋଲି ଦୁଃଖ କରିଛନ୍ତି । ହେଲେ, ସମଗ୍ର ସାହିତ୍ୟ-ଜଗତରେ ଏ ଦୁଇଜଣଙ୍କ ପରି ଲେଖକ କ୍ୱଚିତ୍ ଦେଖାଯାନ୍ତି, ଯେଉଁମାନେ ନିଜ ନିଜର ସ୍ୱତନ୍ତ୍ର ପ୍ରକାଶଭଙ୍ଗୀରେ ମାନବ-ଜୀବନର ବହୁ ଗୋପନ ରହସ୍ୟ ଉଦ୍‌ଘାଟନ କରି ଶତାବ୍ଦ ଶତାବ୍ଦୀ ଧରି ଲକ୍ଷ ଲକ୍ଷ ନରନାରୀଙ୍କ ହୃଦୟକୁ ମୁଗ୍ଧ କରିଆସିଛନ୍ତି ।

କବିଭାବରେ ତୁଳସୀ ଦାସ ପୃଥିବୀର ବରିଷ୍ଠ କବିମାନଙ୍କ

ମଧ୍ୟରେ ଆସନ ଗ୍ରହଣ କରିଛନ୍ତି । ସେ କେବଳ ସାମାନ୍ୟ ଜଣେ କବି ନଥିଲେ, ଜଣେ ଅନୁସନ୍ଧିତ୍ସୁ ଭାବରେ ସେ ସେହି ପରଂବ୍ରହ୍ମର ସ୍ପର୍ଶ ପାଇଁ ଅବିଶ୍ରାନ୍ତ ସାଧନା କରି ଆସିଛନ୍ତି । ସେ ଜଣେ ସାଧୁପୁରୁଷ ଥିଲେ । କେବଳ ଯେ ସାଧୁପୁରୁଷ ତା' ନୁହେଁ, ସେ ଥିଲେ ଜଣେ ମାନବବାଦୀ, ଯାହାଙ୍କ ଲେଖାବଳୀ ଜନସାଧାରଣଙ୍କ ଜୀବନ ଓ ସଂସ୍କୃତି ଉପରେ ସୁଦୃଢ଼ ପ୍ରଭାବ ପକାଇ ପାରିଛି । ତାଙ୍କର ଉଚ୍ଚକୋଟୀର କୃତି ପାରମ୍ପରିକ ଭାରତୀୟ ସାଂସ୍କୃତିକ ଓ ଆଧ୍ୟାତ୍ମିକ ସମ୍ପଦର ଅନ୍ୟ ଗୋଟିଏ ଶୀର୍ଷତମ ବ୍ୟାଖ୍ୟା । ତଦ୍ଦ୍ୱାରା ଅଧିବିଦ୍ୟା ଅନୁଧ୍ୟାନକାରୀଙ୍କ ବିବଦମାନ ପରିସ୍ଥିତିର ବହୁ ଦୂରରେ ରହି, ସ୍ୱର୍ଗୀୟ ଆଲୋକ ଏବଂ ପ୍ରେମ ଉପରେ ଜୀବିକା ଏବଂ ବିଶ୍ୱାସ ସ୍ଥାପନ ଲାଗି ଦୃଢ଼ଭାବରେ କହି, ଏବଂ ଗୋଟିଏ ଐଶ୍ୱରିକ ବ୍ୟକ୍ତିତ୍ୱ ମୁକ୍ତି ଦାନ କରେ ବୋଲି ସମର୍ଥନ କରି ସେ ଜନ-ଜୀବନ ପ୍ରତି ଆଶା ଏବଂ ପୂର୍ଣ୍ଣତାର ସୁନିଶ୍ଚିତ ବାର୍ତ୍ତା ପ୍ରଦାନ କରିଛନ୍ତି ।

ତୁଳସୀ ଦାସଙ୍କ ଜୀବନକାହାଣୀ ଯେଉଁ ମୌଳିକ ବିଷୟବସ୍ତୁ ଉପରେ ସାଧାରଣଭାବେ ଗଢ଼ିଉଠିବାର କଥା, ତାହା ସର୍ବତୋଭାବେ ଉନ୍ନତଧରଣର ନୁହେଁ । ଅନ୍ୟ ପକ୍ଷରେ କେତେଗୁଡ଼ାଏ ପୌରାଣିକ କାହାଣୀ, ସ୍ତୁତିପୂର୍ଣ୍ଣ ଗୀତ ଏବଂ ତଥାକଥିତ ଜୀବନଚରିତ ସବୁ କେତେ ଶିଷ୍ୟ, କେତେ ସାଧୁପୁରୁଷ ଓ କେତେ ଗୁଣ-ଗ୍ରାହକଙ୍କଠାରୁ ମିଳୁଛି । ଏମାନଙ୍କ ମନୋବୃତ୍ତି ସ୍ୱଭାବତଃ ଏମାନଙ୍କ ବିଶ୍ୱସ୍ତ ସହକର୍ମୀମାନଙ୍କ ମନୋବୃତ୍ତି ପରି ମିଥ୍ୟା ପ୍ରଶଂସା ଲାଗି ଲାଳାୟିତ । ଏ ଶ୍ରେଣୀର ପୁସ୍ତକଗୁଡ଼ିକ ହେଉଛି ନଭଦାସଙ୍କ ଭକ୍ତମାଳ, ପ୍ରିୟ-ଦାସଙ୍କ ଭକ୍ତମାଳର ଟୀକା, ବାବା ବେଣୀମାଧବ ଦାସଙ୍କ ମୂଳ-ଗୋସ୍ୱାମୀ ଚରିତ । ବାବା ବେଣୀମାଧବ କବିଙ୍କର ସମସାମୟିକ

ବ୍ୟକ୍ତି ଏବଂ କବିଙ୍କର ଜଣେ ଶିଷ୍ୟ ଥିବାର କଥିତ ଅଛି । 'ଶିବସିଂହ ସରୋଜ' ଅନ୍ୟ ଗୋଟିଏ ପୁସ୍ତକ ଯହିଁରେ ହିନ୍ଦୀ କବିମାନଙ୍କର ଜୀବନଚରିତ ରହିଛି । ଏହାର ଗ୍ରନ୍ଥକାର ଶିବସିଂହ ସେନ୍‌ଗାର ନାନା ବିବାଦମାନ ବର୍ଣ୍ଣନାର ଜଙ୍ଗଲ ଭିତରୁ, ଯେତେ ଯାହା ସମ୍ଭବ ହୋଇପାରେ, ବିଷୟବସ୍ତୁ ଓ ପ୍ରମାଣଯୋଗ୍ୟ ଘଟଣା ସଂଗ୍ରହ କରି ତୁଳସୀଦାସଙ୍କ ଜୀବନକାହାଣୀ ପ୍ରସ୍ତୁତ କରିବା ଲାଗି, ଆଧୁନିକ ଯୁଗର ଜ୍ଞାନୀପଣ୍ଡିତମାନେ ଅଧିକ ପ୍ରଚେଷ୍ଟା ଚଳାଇଛନ୍ତି । ଏହି ପ୍ରକାର ଗ୍ରନ୍ଥମାନଙ୍କ ମଧ୍ୟରେ ମୁଖ୍ୟସ୍ଥାନ ଅଧିକାର କରି ଠିଆ ହୋଇଛି ସାର୍ ଜର୍ଜ ଗ୍ରିଅର୍‌ସନଙ୍କ—"ତୁଳସୀଦାସଙ୍କ ଉପରେ ଟିପ୍‌ପଣୀ ।" 1893 ଖ୍ରୀଷ୍ଟାବ୍ଦରେ 'ଇଣ୍ଡିଆନ୍ ଆଣ୍ଟିକ୍ୱାରୀ' ପତ୍ରିକାରେ ଏହି ଲେଖାଟି ପ୍ରକାଶଲାଭ କରିଥିଲା । ଏହା ପରେ ତୁଳସୀଦାସଙ୍କ ଜୀବନଚରିତର ଲେଖକମାନେ ତୁଳସୀଦାସଙ୍କ ସମ୍ବନ୍ଧରେ ଯାହା ଲେଖିଛନ୍ତି, ତାହା ଜର୍ଜଙ୍କ ଲିଖିତ ବିଷୟବସ୍ତୁରୁ ଏବଂ ଜର୍ଜ ଯେଉଁ ସିଦ୍ଧାନ୍ତରେ ପହଞ୍ଚିଛନ୍ତି—ତହିଁରୁ ବିପୁଳ ଭାବରେ ଗ୍ରହଣ କରାଯାଇଛି; କିନ୍ତୁ ତୁଳସୀ ଦାସଙ୍କ ନିଜ ଲେଖାର ପ୍ରତି ପୃଷ୍ଠାରେ ତାଙ୍କର ଯେଉଁ ସଂଗତ ବିଶ୍ୱାସ, ଅନୁଭୂତି ଏବଂ ଅନ୍ତଃସ୍ଥଳର ନାନା ବିରୋଧଭାବ ସ୍ଥାନ ପାଇଛି—ତହିଁରୁ କବିଙ୍କ ସ୍ୱରୂପ କଳ୍ପନା କରିବା ପାଇଁ ଏବେ ମଧ୍ୟ ସୃଷ୍ଟିମୂଳକ ପ୍ରଚେଷ୍ଟା ହେବା ଉଚିତ ।

ତୁଳସୀ ଦାସ ନିଜର ଜନ୍ମ ତାରିଖ କିମ୍ବା ନିଜର ଜନ୍ମସ୍ଥାନ —କୌଣସିଠାରେ ଉଲ୍ଲେଖ କରି ନାହାନ୍ତି । ସମ୍ପୂର୍ଣ୍ଣରୂପେ ବିଶ୍ୱାସ-ଯୋଗ୍ୟ ଓ ନିର୍ଭୁଲ ପ୍ରମାଣ କିଛି ନାହିଁ, ଯଦ୍ୱାରା ଆମେ ତାଙ୍କର ସଠିକ ଜନ୍ମ ତାରିଖ ଓ ଜନ୍ମସ୍ଥାନ ନିର୍ଣ୍ଣୟ କରି ପାରିବୁ । ବାବା ବେଣୀମାଧବ ଦାସଙ୍କ ପ୍ରମାଣ ଉପରେ ପ୍ରଧାନତଃ ବିଶ୍ୱାସ କରି

ଲେଖକମାନେ ତାଙ୍କର ଜନ୍ମତାରିଖ **1554** ସମ୍ବତ୍ ବା **1497** ଖ୍ରୀଷ୍ଟାବ୍ଦ ବୋଲି ଉଲ୍ଲେଖ କରିଥାନ୍ତି । କିନ୍ତୁ ଏଚ୍. ଏଚ୍. ଉଇଲସନ୍ ସାହେବ ତାଙ୍କର ଗୋଟିଏ ଲେଖାରେ ମନ୍ତବ୍ୟ ପ୍ରକାଶ କରିଛନ୍ତି ଯେ, ତୁଳସୀ ଦାସ ତାଙ୍କ ହିନ୍ଦୀ ରାମାୟଣର ଲେଖା ଆରମ୍ଭ କରିଥିଲେ **1631** ସମ୍ବତ୍‌ରେ । ସେତେବେଳେ ତାଙ୍କର ବୟସ **31** ବର୍ଷ ମାତ୍ର । ତାଙ୍କର ଏହି ମନ୍ତବ୍ୟରୁ ଅନେକେ ବିଶ୍ୱାସ କରନ୍ତି ଯେ, ତୁଳସୀ ଦାସ ଜନ୍ମଲାଭ କରିଥିଲେ **1600** ସମ୍ବତ୍‌ରେ ବା **1543** ଖ୍ରୀଷ୍ଟାବ୍ଦରେ । ତାଙ୍କ ଜନ୍ମ ସମ୍ପର୍କୀୟ ଉଭୟ ତାରିଖ ଠିକ୍ ବୋଲି ବହୁ ଉଲ୍ଲେଖଯୋଗ୍ୟ ବିଷୟରୁ ସମର୍ଥନ ମିଳୁଛି; କିନ୍ତୁ କବି ନିଜ ଜୀବନର ଘଟଣାବଳୀ ସମ୍ପର୍କରେ କଣ କହୁଛନ୍ତି—ସେସବୁ ଆଖି ଆଗରେ ଥୋଇ, ତାଙ୍କ ଜନ୍ମ-ସମ୍ପର୍କିତ ଉଭୟ ତାରିଖର ସତ୍ୟତା ବିଚାରକୁ ଆଣିବାର କଥା । ଏହା କେବେ ସମ୍ଭବପର ନୁହେଁ ଯେ ସେ ଜୀବନର ପ୍ରଥମ ଅବସ୍ଥାରେ କିମ୍ବା ଶେଷ ଅବସ୍ଥାରେ (ଯାହା କି ବିଶ୍ୱାସ କରିବା ଅସମ୍ଭବ) ତାଙ୍କ ରାମଚରିତମାନସ ଲେଖିଥିବେ ।

**1589** ସମ୍ବତ୍ ଭାଦ୍ରପଦ **11** ଦିନ ମଙ୍ଗଳବାର ବା **1532** ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର **18** ତାରିଖ ମଙ୍ଗଳବାର ଦିନ ହିଁ ତୁଳସୀ ଦାସଙ୍କ ଜନ୍ମଦିନ ବୋଲି ପଣ୍ଡିତମାନଙ୍କ ମତରେ ଐକ୍ୟ ଦେଖାଯାଏ। ଏହି ତାରିଖ ହିଁ ତାଙ୍କର ପ୍ରକୃତ ଜନ୍ମତାରିଖ ବୋଲି ଜର୍ଜ ଗ୍ରିୟରସନ୍ ଏବଂ ଆଧୁନିକ ଯୁଗର ବଡ଼ ବଡ଼ ପଣ୍ଡିତମାନେ ବିଚାର କରିଛନ୍ତି । ଶିବସିଂହ ସେନ୍‌ଗାର ତାଙ୍କ 'ଶିବ-ସିଂହ ସରୋଜ' ପୁସ୍ତକରେ ପ୍ରକାଶ କରିଛନ୍ତି ଯେ, ତୁଳସୀଦାସ **1583** ସମ୍ବତ୍‌ର ପାଖାପାଖି କୌଣସି ଏକ ବର୍ଷରେ ଜନ୍ମଲାଭ କରିଥିଲେ, ଯାହା କି **1589** ସମ୍ବତ୍‌ର ବହୁ ଦୂରବର୍ତ୍ତୀ ନୁହେଁ (**1532** ଖ୍ରୀଷ୍ଟାବ୍ଦ) ।

ଜ୍ୟୋତିଷିକ ଗଣନା ଅନୁସାରେ ଏଇ ତାରିଖ ସମ୍ପୂର୍ଣ୍ଣରୂପେ ପ୍ରମାଣିତ ହୋଇପାରେ ।

ତୁଳସୀ ଦାସଙ୍କ ପ୍ରକୃତ ଜନ୍ମସ୍ଥାନ ସମ୍ପର୍କରେ ଯେଉଁ ବିବାଦ ତାହା ଏ ପର୍ଯ୍ୟନ୍ତ ଏତେ ସହଜରେ ମେଣ୍ଟିପାରିନି । ହୋମର୍‌ଙ୍କ ଜନ୍ମସ୍ଥାନର ଗୌରବ ନେବା ପାଇଁ ସାତଟି ସହର ସେମାନଙ୍କର ଦାବୀ ଉପସ୍ଥାପନ କରନ୍ତି ଏବଂ ତୁଳସୀ ଦାସଙ୍କ ଜନ୍ମସ୍ଥାନ ପାଇଁ ଠିକ୍ ସେଇପରି ପ୍ରାୟ ବହୁ ସ୍ଥାନର ଉଲ୍ଲେଖ ରହିଛି ।

ଏଇ ସ୍ଥାନଗୁଡ଼ିକ ଉତ୍ତର ପ୍ରଦେଶ ଅନ୍ତର୍ଗତ । ବିଶେଷଭାବେ ଉଲ୍ଲେଖ ଥିବା ଚାରିଗୋଟି ସ୍ଥାନ ମଧ୍ୟରୁ ତିନୋଟି ସ୍ଥାନ ଚିତ୍ରକୂଟ ନିକଟବର୍ତ୍ତୀ ସ୍ପଷ୍ଟଭାବରେ ନିର୍ଦ୍ଦିଷ୍ଟ ହୋଇଥିବା ଗୋଟିଏ ଅଞ୍ଚଳରେ ଅବସ୍ଥିତ ।

ବିଶିଷ୍ଟ ଜ୍ଞାନୀ ଓ ଗବେଷକ ସାର୍ ଜର୍ଜ ଗ୍ରିୟରସନ୍ ମତ ପ୍ରକାଶ କରିଛନ୍ତି ଯେ ରାଜପୁରଠାରୁ ଦଶ ବାର ମାଇଲ ଦୂରବର୍ତ୍ତୀ ଯମୁନା ନଦୀ କୂଳରେ ତାରି ନାମକ ସ୍ଥାନ ତୁଳସୀ ଦାସଙ୍କ ପ୍ରକୃତ ଜନ୍ମସ୍ଥାନ ବୋଲି ସର୍ବଶ୍ରେଷ୍ଠ ଦାବୀ କରିବାକୁ ଯୋଗ୍ୟ । 'ଭକ୍ତମାଳ'ର ଟୀକା ଗ୍ରନ୍ଥରେ ତାରି ନାମକ ସ୍ଥାନରେ ତୁଳସୀ ଦାସ ଜନ୍ମଗ୍ରହଣ କରିଥିଲେ ଏବଂ ତା ପରେ ପରେ ସେ ରାଜପୁରରେ ବସବାସ କରିଥିଲେ ବୋଲି ଉଲ୍ଲେଖ ରହିଛି । ରାମାୟଣ ପାଠ କରିବାରେ ଏବଂ ଆବୃତ୍ତି କରିବାରେ ଯେଉଁ ସମାଜ ନିଯୁକ୍ତ, ସେହି ସମାଜରେ ଏଇ ବିବରଣୀ ପ୍ରଚଳିତ ।

ରାଜାପୁରକୁ ତୁଳସୀ ଦାସଙ୍କ ଜନ୍ମ ସ୍ଥାନ ବୋଲି ସ୍ୱାଗତ କରିବାର ଦାବୀ ମଧ୍ୟ ସାଧାରଣ ଭାବରେ ଅଧିକତର ଗ୍ରହଣ କରାଯାଇଛି । 'ଇମ୍ପେରିଆଲ୍ ଗେଜେଟିଅର ଅଫ୍ ଇଣ୍ଡିଆ' (The

**Imperial Gazetter of India)** ସରଳ ଭାବରେ କହନ୍ତି : "ଜନଶ୍ରୁତି ଅନୁଯାୟୀ ଏଇ ସହରଟି ରାମାୟଣର ସୁବିଖ୍ୟାତ ଗ୍ରନ୍ଥକାର ତୁଳସୀ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା ।" ଏଇ ବିବୃତି 'ଭକ୍ତମାଳ'ର ଟୀକାକାରଙ୍କ ଦୃଢ଼ ଉକ୍ତି ଉପରେ ଯଥେଷ୍ଟ ଆଲୋକପାତ କରୁଛି ଯେ କବି ପ୍ରକୃତରେ ଜନ୍ମଲାଭ କରିଥିଲେ କେତେ ମାଇଲ ଦୂରରେ ଥିବା ତାରି ନାମକ ସ୍ଥାନରେ । କିନ୍ତୁ ସେଠାରେ ନିଜ ଜୀବନର ଭାଗ୍ୟ-ବିପର୍ଯ୍ୟୟ ଦେଖି ସେ ରାଜାପୁର ଚାଲିଗଲେ ଏବଂ ସେଠାରେ ରହି ସେ ରାମକୀର୍ତ୍ତି ଗାଥା ଗାନ କରିବାରେ ନିଜକୁ ନିୟୋଜିତ କଲେ । ଯେଉଁପରିଭାବେ ଦେଖିବାକୁ ଗଲେ, ରାଜାପୁର ସହିତ କବିମାନଙ୍କର ସମ୍ପର୍କ ତାଙ୍କର ତରୁଣ ବୟସରେ ରହିଥିଲା ବୋଲି, ବହୁ ବିଷୟ ବହୁ ଘଟଣା ନିର୍ଦ୍ଦେଶ ଦେଉଛି । ତେଣୁ ରାଜାପୁର ସହ କବିଙ୍କ ସମ୍ପର୍କ ପ୍ରତି ଏତେ ସହଜରେ ଆଖି ବୁଜିଦେଇ ହେବନି । କଥିତ ଅଛି, ରାଜାପୁରରେ ଯେଉଁ ଘରେ ତୁଳସୀ ଦାସ ବାସ କରୁଥିଲେ, ସେଇ ଘରର ସମ୍ମୁଖ ଭାଗରେ, ହନୁମାନ ଦେବଙ୍କର ଗୋଟିଏ ମୂର୍ତ୍ତି ସେ ସ୍ଥାପନ କରିଥିଲେ ଏବଂ ତାଙ୍କ ରଚିତ ରାମଚରିତମାନସରୁ ଅଯୋଧ୍ୟା କାଣ୍ଡର ଗୋଟିଏ ପୋଥି ସେହି ମୂର୍ତ୍ତି ପାଖରେ ରଖାଯାଇଥିଲା । କେତେଗୁଡ଼ିଏ ପରିବାର ସେଠି ରହିଛି, ଯେଉଁମାନେ କବିଙ୍କ କୌଣସି ଏକ ଶିଷ୍ୟର ବଂଶଧର ବୋଲି ନିଜର ପରିଚୟ ଦିଅନ୍ତି । କବିଙ୍କୁ ଭୂମିଦାନ ଦେବାର କେତେଗୁଡ଼ିଏ କାଗଜପତ୍ର ମଧ୍ୟ ମିଳୁଛି । ରାଜାପୁରକୁ କବିଙ୍କ ଜନ୍ମସ୍ଥାନ ବୋଲି ଦାବୀ କରିବାର ଯଥେଷ୍ଟ ପ୍ରମାଣ ଏସବୁରୁ ମିଳିପାରୁଛି । ଏ ବିଷୟକୁ ଏକବାର ଛାଡ଼ିଦେବାର ନୁହେଁ; ଯେହେତୁ କବିଙ୍କର ଶିଷ୍ୟ ଓ ଆଜୀବନ ସହଚର ବାବା ବେଣୀମାଧବ ଦାସ ଏବଂ

ଅଧିକାଂଶ ପ୍ରାଚୀନ ଲେଖକ, ଯେଉଁମାନେ ତୁଳସୀଦାସଙ୍କ ଜୀବନ-ଚରିତ ଲେଖିଚନ୍ତି—ସେମାନେ ସମସ୍ତେ ମତ ଦେଇଚନ୍ତି ଯେ ରାଜାପୁର କବିଙ୍କ ଜନ୍ମସ୍ଥାନ । ଅଧିକାଂଶ ଆଧୁନିକ ପଣ୍ଡିତ ମଧ୍ୟ ଶିବସିଂହ ସେନ୍‌ଗାରଙ୍କ ପୁସ୍ତକଲିଖିତ "ତୁଳସୀ ରାଜାପୁରର ବାସିନ୍ଦା ଥିଲେ" ଏଇ ବିବୃତି ସହିତ ଏକମତ ।

ତୁଳସୀ ଦାସଙ୍କ ରାମଚରିତମାନସର ଅଯୋଧ୍ୟା କାଣ୍ଡରେ ଗୋଟିଏ କୌତୁକାବହ ଘଟଣାର ଉଲ୍ଲେଖ ଅଛି । ଯେତେବେଳେ ଶ୍ରୀରାମ ଯମୁନା ନଦୀ ପାରହୋଇ ରାଜାପୁର ନିକଟବର୍ତ୍ତୀ ରାଜ୍ୟରେ ପହଞ୍ଚିଲେ, ଠିକ୍ ସେଇ ମୁହୂର୍ତ୍ତରେ ଜଣେ ଅଜଣା ସନ୍ନ୍ୟାସୀ ସେଠି ଆସି ଦେଖାଦେଲେ । ସେଇ ସନ୍ନ୍ୟାସୀ ଶ୍ରୀରାମଙ୍କ ପାଦତଳେ ପଡ଼ିଗଲବେଳେ ତାଙ୍କଠାରୁ ଯେଉଁ ଭକ୍ତିର ଉନ୍ମାଦନା ଫୁଟିଉଠିଲି ତାହାଦ୍ୱାରା ପ୍ରଭାବିତ ହୋଇ, [illegible]ତକ ଭାଷ୍ୟକାର କହିଚନ୍ତି ଯେ, ସେଇ ସନ୍ନ୍ୟାସୀ ହିଁ ନିଜେ କବି; ଯିଏ ନିଜର ପ୍ରଭୁ ନିଜ ଜନ୍ମମାଟିକି ଲଗିରହିଥିବା ଭୂମି ଉପରେ ପାଦ ପକାଇବାର ଦେଖି ସ୍ୱଭାବତଃ ବିପୁଳ ଆନନ୍ଦରେ ଉଦ୍‌ବେଳିତ ହୋଇ ଉଠିଥିବେ । ନାଟକୀୟ ଢଙ୍ଗରେ କବି ଏଇଭଳି ଗୋଟିଏ ଚରିତ୍ରର ଅବତାରଣା ତାଙ୍କ ବର୍ଣ୍ଣନା ଭିତରେ କାହିଁକି କରିଚନ୍ତି, ଅଥଚ ସେହି ଚରିତ୍ରର ସମ୍ପର୍କ ତାଙ୍କ ବର୍ଣ୍ଣିତ ଗଳ୍ପ ସହିତ ଆଦୌ ନାହିଁ ଏହା ବୁଝିବା କଷ୍ଟକର । ତେବେ ତାଙ୍କର ଗଭୀର ଭାବପ୍ରବଣ ଅନ୍ତର ଏହାର କାରଣ ନ ହୋଇଥିଲେ, ସେ ଏହା କରିନଥାନ୍ତେ ।'

ଯେଉଁ ପ୍ରଥମ ଲେଖକ ଏଚ୍. ଏଚ୍. ଉଇଲସନ୍ ମୌଖିକ ଭାବରେ ଶୁଣିଥିବା ବିବରଣୀ ଉପରେ ପ୍ରଧାନତଃ ବିଶ୍ୱାସ କରନ୍ତି ବୋଲି ମାନିଚନ୍ତି, ସେ 'ହିନ୍ଦୁ ସମ୍ପ୍ରଦାୟ' ନାମକ ଲେଖାରେ

କହିଚନ୍ତି ଯେ ତୁଳସୀଦାସ ଶସ୍ତକୂଟ ନିକଟବର୍ତ୍ତୀ ହାଜିପୁରର ଅଧିବାସୀ ଏବଂ ତାଙ୍କର ବୟୋବୃଦ୍ଧି ହେବାରୁ ସେ ବନାରସ ଯାଇ-ଥିଲେ । ଗାରସନ୍ ଡ଼, ଟାସି ହିନ୍ଦୀ ସାହିତ୍ୟର ପ୍ରଥମ ଐତିହାସିକ । ସେ ଉଇଲସନ୍‌ଙ୍କ କଥାର ଖିଅକୁ ଧରି ସେଇ ବିବୃତିର ପୁନରାବୃତ୍ତି କରିଚନ୍ତି । ହାଜିପୁର ସମ୍ବନ୍ଧରେ ବିଶେଷରୂପେ କେହି କିଛି ଜାଣନ୍ତି ନାହିଁ ଏବଂ ହାଜିପୁର ଓ ରାଜାପୁର ଦୁଇଟି ନାମ ଯେ ଗୋଳମାଳିଆ ବୋଧ ହେଉଚି—ଏହା ଅସମ୍ଭବ ନୁହେଁ ।

କେତେ ବର୍ଷ ତଳେ କେତେ ଜଣ ଦାବୀ କରିଥିଲେ ଯେ ତୁଳସୀ-ଦାସଙ୍କ ଜନ୍ମସ୍ଥାନ ଥିଲି ଉତ୍ତର ପ୍ରଦେଶର ଏଟାହ ଜିଲ୍ଲା ଅନ୍ତର୍ଗତ ସୋରଣରେ ଏବଂ ଏଇ ବିଷୟ ଗୋଟିଏ ଭିନ୍ନ ଧରଣର ଭିତ୍ତି ଉପରେ ପ୍ରତିଷ୍ଠିତ । କଥିତ ଅଛି ଯେ ସେଇ ସହର ଭିତରେ ଜଣେ କଂସେଇର ଦଖଲରେ ଥିବା ଗୋଟିଏ ଘରେ କବି ବାସ କରୁଥିଲେ । ସେଠାରେ ନରସିଂହଜୀ ମନ୍ଦିରରେ ନରସିଂହଜୀ ନଥିଲେ; କିନ୍ତୁ ଥିଲି ଗୋଟିଏ ବିଦ୍ୟାଳୟ, ଯେଉଁଠି ତୁଳସୀ ଦାସଙ୍କ ଗୁରୁ ନରହରି ଦାସ ଶିକ୍ଷାଦାନ କରୁଥିଲେ । କବିଙ୍କ ଜୀବନ କାହାଣୀ ପାଇଁ ଗୋଟିଏ ନୂତନ ତଥ୍ୟ ଖୋଜି ବାହାର କରାଯାଇଚି । ତଦ୍ଦ୍ୱାରା ଜଣାଯାଏ ତୁଳସୀ ଦାସ ପରମ କୃଷ୍ଣଭକ୍ତ ନନ୍ଦ ଦାସଙ୍କର ବଡ଼ଭାଇ ଥିଲେ । ନନ୍ଦ ଦାସଙ୍କ ନାମ ଦୁଇଶହ ବୈଷ୍ଣବଙ୍କ କାର୍ଯ୍ୟାବଳୀର ବିବରଣୀରେ ରହିଚି । ସେଇ ବିବରଣୀକୁ କହନ୍ତି 'ଦୁଇଶହ ବୈଷ୍ଣବଙ୍କ ବୃତ୍ତ' । ସେଇ ଘର ଓ ମନ୍ଦିର ଉପରେ ଯେଉଁ ଦାବୀ ବା ଅଧିକାରର ଉଲ୍ଲେଖ ଅଛି, ତାହା ପୂରାପୂରି କିମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ । 'ଦୁଇଶହ ବୈଷ୍ଣବଙ୍କ ବୃତ୍ତ' କେତେଦୂର ବିଶ୍ୱାସଯୋଗ୍ୟ ସେ ସମ୍ବନ୍ଧରେ ସମାଲୋଚକମାନେ ସନ୍ଦିହାନ । ଯେ କୌଣସି

ବାଗରୁ ଦେଖିବାକୁ ଗଲେ ଏହା କେବେ ସମ୍ଭବ ନୁହେ ଯେ ତୁଳସୀ-ଦାସଙ୍କର ନନ୍ଦ ଦାସ ବୋଲି ପ୍ରକୃତରେ ଜଣେ ସାନଭାଇ ଥିଲେ । କାରଣ ତୁଳସୀ ଦାସଙ୍କ ଜନ୍ମର ପରେ ପରେ ତାଙ୍କର ମାଆ ମରି-ଯାଇଥିଲେ । ସୋରନ ତୁଳସୀ ଦାସଙ୍କ ପ୍ରକୃତ ଜନ୍ମସ୍ଥାନ ବୋଲି କିଛି ପ୍ରମାଣ ନାହିଁ । କେବଳ ବସ୍ତୁରଧାରା ଉପରେ ପ୍ରତିଷ୍ଠିତ ଏହିଭଳି ଗୋଟିଏ ଦାବୀର ପଂକ୍ତି ରାମଚରିତମାନସରେ ଦେଖିବାକୁ ମିଳେ । ସେହି ପଂକ୍ତିରେ କବି ଉଲ୍ଲେଖ କରିଚନ୍ତି ଯେ, ସେ ସୂକର-ଖେତଠାରେ ରାମଙ୍କ କାହାଣୀ ଶୁଣିବାକୁ ପାଇଥିଲେ । ତେଣୁ ମନେ କରାଯାଉଛି ଯେ, ଏହି ସୂକରଖେତ ସୋରନର ଅନ୍ୟ ଗୋଟିଏ ନାମ । ପ୍ରଥମତଃ ସେ ସୂକରଖେତଠାରେ ରାମଙ୍କ କାହାଣୀ ଶୁଣି-ଥିଲେ । ଏହା କହିବା ଅର୍ଥ ନୁହେଁ ଯେ, ସେ ସେଠାରେ ଜନ୍ମଲାଭ କରିଥିଲେ । ଦ୍ୱିତୀୟତଃ ଯବୋପରି ବଳବତ୍ତର ଯୁକ୍ତି ରହିଛି ଯେ କବି ଯେଉଁ ସୂକରଖେତର ଉଲ୍ଲେଖ କରିଚନ୍ତି ତାହା ସୂକରଖେତ ବା ବରାହକ୍ଷେତ୍ର ହୋଇପାରେ, ଯାହାର ଅବସ୍ଥିତି ଅଯୋଧ୍ୟାର ପଶ୍ଚିମକୁ କେତେ ମାଇଲ ଦୂରରେ ସରଯୂ ଓ ଘଘରା ନଦୀର ସଂଗମ ସ୍ଥଳରେ ରହିଛି । ବାବା ବେଣୀମାଧବ ଦାସ କବିଙ୍କର ଶିଷ୍ୟ ଓ ସହଚର । ସେ 1642 ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କରିଥିଲେ । ସେ ସୁପରିଚିତ 'ଗୋସାଇଁ ଚରିତ' ଲେଖିଚନ୍ତି । କୃଷ୍ଣଦତ୍ତ ମିଶ୍ର 'ଗୌତମ ଚନ୍ଦ୍ରିକା'ର ଗ୍ରନ୍ଥକାର । ଏହି ଗ୍ରନ୍ଥ କବି ତୁଳସୀ ଦାସଙ୍କ ମୃତ୍ୟୁର ବର୍ଷକ ପରେ 1624 ଖ୍ରୀଷ୍ଟାବ୍ଦରେ ଲେଖା ହୋଇଥିଲା । ସେମାନେ ନିଶ୍ଚିତ ଭାବରେ ପ୍ରକାଶ କରିଚନ୍ତି ଯେ, କବି ତୁଳସୀ ଦାସ ନରହରି ଦାସଙ୍କ ପାଦତଳେ ବସି, ଯେଉଁଠାରେ ଶିକ୍ଷା ପାଉ-ଥିଲେ ସେହି ସ୍ଥାନ ଘର୍ଘରା ଓ ସରଯୂର ସଂଗମସ୍ଥଳରେ ଅବସ୍ଥିତ ।

ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ 'ମାନସ' ଉପରେ ଯେଉଁମାନେ ଭାଷ୍ୟ ଲେଖିଛନ୍ତି, ସେମାନଙ୍କ ମନରେ ତିଳେମାତ୍ର ସନ୍ଦେହ ନାହିଁ ଯେ, ସୂକରଖେତ ବା ବରାହକ୍ଷେତ୍ର ଅଯୋଧ୍ୟାର ପଶ୍ଚିମକୁ ସରଯୂ ନଦୀ କୂଳରେ ଅବସ୍ଥିତ । କିମ୍ବଦନ୍ତୀ ଏବଂ ପ୍ରାଚୀନ ଗ୍ରନ୍ଥସମୂହ ସୁଦୃଢ଼ ଭାବରେ ପ୍ରକାଶ କରନ୍ତି ଯେ, ସୂକରଖେତ ଗୋଟିଏ ଅତି ପବିତ୍ର ସ୍ଥାନ ଏବଂ ବହୁସଂଖ୍ୟକ ଭକ୍ତଙ୍କର ଏଠି ସମାଗମ ହୁଏ । 'ରାମଚରିତମାନସ' ଅବଧି ଭାଷାରେ ଲିଖିତ ଏବଂ ତତ୍‌କାଳୀନ ସାଂସ୍କୃତିକ ବାତାବରଣର ଚିତ୍ର ଏଥିରେ ରହିଛି । ଏସବୁ ସେଇ ଅଞ୍ଚଳବାସୀ ଲୋକମାନଙ୍କ ଜୀବନ ଓ ପ୍ରକୃତି ଉପରେ ନିର୍ଭୁଲ ଭାବେ ପ୍ରତିବିମ୍ବିତ । କବି ଏଇ ଜନ-ଜୀବନ ଭିତରେ ଆଦ୍ୟଜୀବନର କେତେ ସମୟ କଟାଇଥିଲେ ବୋଲି କହିଲେ ଭୁଲ ହେବ ନାହିଁ ।

ତୁଳସୀ ଦାସ ନିଜେ ସ୍ୱୀକାର କରିଛନ୍ତି ଯେ, ସେ ଗୋଟିଏ ଶ୍ରେଷ୍ଠ ପରିବାରରେ ଜନ୍ମଲାଭ କରିଥିଲେ ; କିନ୍ତୁ ସେ ଜାତିଗତ ପ୍ରଥାକୁ ପ୍ରଚଣ୍ଡ ଭାବରେ ବିରୋଧ କରୁଥିଲେ । ସେ ଯେ ବ୍ରାହ୍ମଣ ଥିଲେ, ଏ କଥା ବିଶ୍ୱାସ କରିବାରେ ଯଥେଷ୍ଟ କାରଣ ରହିଛି । ବୋଧହୁଏ ସେ ସରଯୂ-ପାରୀଣ ଶ୍ରେଣୀର ବ୍ରାହ୍ମଣ । ତାଙ୍କ ବାପାଙ୍କ ନାମ ଆତ୍ମାରାମ ଏବଂ ମାଆଙ୍କ ନାମ ହୁଳସୀ ଦେବୀ ।

ତାଙ୍କ ଜନ୍ମର ସଠିକ ତାରିଖ ଇତ୍ୟାଦି ଅନିଶ୍ଚିତ; କିନ୍ତୁ ତାଙ୍କ ଜନ୍ମର ଓ ପ୍ରାଥମିକ ଜୀବନର ଘଟଣାବଳୀ କବି ଯେଉଁରୂପେ ବର୍ଣ୍ଣନା କରିଛନ୍ତି,ସେ ବର୍ଣ୍ଣନା ଅବିଶ୍ୱାସ୍ୟ ନୁହେଁ । ତାଙ୍କ ନିଜ ଲେଖାରୁ ବହୁତ ଉଲ୍ଲେଖ ଦିଆଯାଇପାରେ ଯେ ତାଙ୍କର ରାଶିଚକ୍ର ଖରାପ ପଡ଼ିଥିଲା ଏବଂ ସେଇ ଖରାପ ରାଶିଚକ୍ର କବଳରେ ପଡ଼ି ସେ ଜନ୍ମଲାଭ କରିଥିଲେ ଏବଂ ବାପମାଆଙ୍କଠାରୁ ନିର୍ମମ ଭାବରେ ଦୂରେଇ ଯାଇ, ନିଜର

କଳ୍ପିତ ଭାଗ୍ୟ ଆଦର ରଖିଲେ ।

ସେ କହିଛନ୍ତି, "ମୁଁ ଏହି ପୃଥିବୀ-ମାଟିକି ଆସିବା ପରେ ମୋ ବାପମାଆ ମୋତେ ପରିତ୍ୟାଗ କରିଲେ । ଏହାଙ୍କ ସ୍ୱୟଂ ସ୍ରଷ୍ଟା ଠିକଏ ଭଲ ଭାଗ୍ୟ ଦେଇ ମୋତେ ପୃଥିବୀକି ପଠାଇ ନାହାନ୍ତି । ମୋ ଜନ୍ମ ବେଳେ ଘରେ ଆନନ୍ଦ ଉତ୍ସବ ମଧ୍ୟ ହୋଇ ନଥିଲା ।" କବି ତାଙ୍କ ଜୀବନର ପରବର୍ତ୍ତୀ ଲେଖାମାନଙ୍କରେ ଏ ଯେଉଁ ଅସ୍ପଷ୍ଟ ଇଙ୍ଗିତ ଦେଇଛନ୍ତି, ତହିଁରୁ ଠିକ୍ ରୂପେ ଜାଣିବା କଷ୍ଟ ଜଣାପଡ଼ୁନି ଯେ, ତାଙ୍କ ଭଳି ଗୋଟିଏ ଶିଶୁକୁ ଘର ଭିତରୁ, କୁଟୁମ୍ବ ମଧ୍ୟରୁ କାହିଁକି ବିଚ୍ଛିନ୍ନ କରି ଦିଆଗଲା । ଲୋକପ୍ରଚଳିତ କିମ୍ବଦନ୍ତୀରୁ ଜଣାଯାଏ, ତୁଳସୀ ଦାସ ଅସାମାନ୍ୟ ବା ଅସ୍ୱାଭାବିକ ଢଙ୍ଗର ପିଲାଟିଏ ଥିଲେ । ସେ ଜନ୍ମ ହେବା ପରେ ପରେ ତାଙ୍କ ମାଆ ମରିଗଲେ । ତାଙ୍କ ପିତା ଭୟ କଲେ ଯେ ଏ ପିଲାଟିଦ୍ୱାରା ସେ ଭାଗ୍ୟବାନ୍ ହେବେ ନାହିଁ । ସାର୍ ଜର୍ଜ ଗ୍ରିୟର୍ସନ୍ ସୁନ୍ଦରଭାବେ ଯୁକ୍ତି ଦର୍ଶାଇଛନ୍ତି ଯେ, ପିଲାଟି ଖରାପ ଗ୍ରହରେ ଜନ୍ମ ହୋଇଥିଲା । ଖରାପ ଗ୍ରହଜନିତ ପିଲା ତା ପିତାମାତାଙ୍କୁ ଅଶୁଭ ହେବାର ସୂଚନା ଦିଏ । ତେଣୁ ସେ ସମୟର ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ କୌଣସି ଜ୍ୟୋତିଷଙ୍କ ପରାମର୍ଶରେ ସେମାନେ ପିଲାଟିକୁ ଏକାବାରେ ପରିତ୍ୟାଗ କଲେ । ତେଣୁ ନିଜେ ସେ ପ୍ରକାଶ କରିଛନ୍ତି ଯେ ତାଙ୍କ ଜନ୍ମ ତାଙ୍କ ପିତାମାତାଙ୍କ ମନରେ ଆନନ୍ଦ ଦେଇ ନଥିଲା ଏବଂ ଜନ୍ମଦିନ ପାଳନରେ ଯେ ଆମୋଦ-ପ୍ରମୋଦ ତାହା ହୋଇ ନଥିଲା । ଦାରିଦ୍ର୍ୟ ଏବଂ ଦୁର୍ଭାଗ୍ୟ ପେଟରେ ତାଙ୍କୁ ଆଦେଶ ଦେଇଥିଲା ଯେ ସେ ଜୀବନଯାତ୍ରା ଆରମ୍ଭ କରିବେ ଗୋଟିଏ ନିରାଶ୍ରୟ ଅନାଥ ଶିଶୁ ପରି—"ମିଂ କାଳି ଘରେ ଖାଇବ କିଛୁ ନିଷ୍କପୁ ନାହିଁ ।"

# 2 ଶିକ୍ଷା ଓ ପରିବେଶ

ଯେତେବେଳେ ଭିକ୍ଷାପାତ୍ର ଧରି ତୁଳସୀଦାସ ଦ୍ୱାରେ ଦ୍ୱାରେ ଭିକ୍ଷା ମାଗି ବୁଲୁଥିଲେ, ସେଇ ଆଦ୍ୟ ଜୀବନରେ ନିଷ୍ଠୁର ଦାରିଦ୍ର୍ୟର ଦୁଃଖଦାୟକ ସ୍ମୃତି ଜୀବନସାରା ତାଙ୍କ ପ୍ରାଣ ଭିତରେ ଜୀବନ୍ତ ରହିଥିଲା । ସେ ମର୍ମସ୍ପର୍ଶୀ ଭାଷାରେ ବର୍ଣ୍ଣନା କରିଛନ୍ତି—କିପରି ଅନାହାରର ଯନ୍ତ୍ରଣା ତାଙ୍କୁ ସବୁ ଜାତିର ଲୋକଙ୍କ ଦୁଆରେ ନେଇ ବୁଲାଇଛି; କିପରି ସାମାନ୍ୟ ଖୁଦକଣା ଭିକରୂପେ ପାଇଲେ ମାନବଜୀବନର ଚତୁଃବର୍ଗ ଫଳପ୍ରାପ୍ତି ପରି ସେ ତାକୁ ସ୍ୱାଗତ କରିଛନ୍ତି; କିପରି ଅନ୍ନ ବସ୍ତ୍ରର ଅଭାବରେ ତାଙ୍କୁ ଏ ସ୍ଥାନରୁ ସେ ସ୍ଥାନକୁ ଦୌଡ଼ିବାକୁ ପଡ଼ିଛି । ସେ କହିଛନ୍ତି, "ଦିନସାରା ମୁଁ ଭିକ ମାଗି ବୁଲୁଥାଏ ଏବଂ ରାତି ହେଲେ ନିର୍ଜନ ମସ୍‌ଜିଦ୍ ବା ମନ୍ଦିର ଭିତରେ ଶୋଇପଡ଼େ । ଯେଣୁ ମୁଁ ହତଭାଗା, ଲୋକମାନେ ମୋ ଦେହର ଛାଇକୁ ମଧ୍ୟ ଆତଙ୍କିତ ହୋଇଯାନ୍ତି ।

ଦାରିଦ୍ର୍ୟ-ପ୍ରପୀଡ଼ିତ ତାଙ୍କର ବାଲ୍ୟ ଜୀବନ ଏବଂ ତହିଁରୁ କିପରି ନିଜକୁ ରକ୍ଷା କରିବାକୁ ହେବ—ସେହି ଚିନ୍ତା ବହନ କରି ଚାଲିଥିଲବେଳେ ଆମେ ସେଗୁଡ଼ିକୁ ନିତାନ୍ତ ଆକ୍ଷରିକ ଅର୍ଥରେ ନିଶ୍ଚୟ ଗ୍ରହଣ କରିନେବା ଉଚିତ ନୁହେଁ । ସେଗୁଡ଼ିକୁ ପୂର୍ବାପର ସଂଗତିକ୍ରମେ ଅନୁଧ୍ୟାନ କରିବା ଆବଶ୍ୟକ । "ସମସ୍ତ ପ୍ରବୃତ୍ତି ବିବର୍ଜିତ ।" କୌଣସି ଏକ ତୁଙ୍ଗ ଶିଖରରୁ ସେ ଯେତେବେଳେ ତାଙ୍କର ପଶ୍ଚାତ୍ ଜୀବନକୁ ମୁହଁ ଫେରାଇ ଚାହିଁଛନ୍ତି ସେତେବେଳେ ତାଙ୍କର ସେହି ଦୁଃଖ-ଦାରିଦ୍ର୍ୟର ଚିତ୍ରଗୁଡ଼ିକ ତାଙ୍କର ପରବର୍ତ୍ତୀ

ଲେଖାବଳୀ ଭିତରେ ସ୍ଥାନ ପାଇଛି । କବିତାବଳୀରେ ସେ କହିଛନ୍ତି, ଯେତେବେଳେ ତାଙ୍କର ବାପ-ମାଆ ତାଙ୍କୁ ପରିତ୍ୟାଗ କଲେ ଏବଂ ସ୍ରଷ୍ଟା ତାଙ୍କର ଭାଲପଟରେ ଠିକଏ ହେଲେ ସୌଭାଗ୍ୟ ଲେଖି ନ ଥିଲେ । ସେତେବେଳେ ପ୍ରଭୁ ରଘୁନାଥ ତାଙ୍କର ସହାୟ ହୋଇଥିଲେ । ଏକ 'ଭିକ୍ଷୁକ କୁଟୀର' ଭିତରେ ସେ ନିଜର ଜନ୍ମ ବୃତ୍ତାନ୍ତ ବର୍ଣ୍ଣନା କରି ଈଶ୍ୱରଙ୍କ ପ୍ରତି ପ୍ରାଣଭରି କୃତଜ୍ଞତା ଜଣାଇ ନିମ୍ନୋକ୍ତ ପଂକ୍ତି ଗାଇଛନ୍ତି—

"ତୁଳସୀର ସର୍ବଶକ୍ତିମାନ୍ ପ୍ରଭୁଙ୍କ ଇଚ୍ଛା ହିଁ ସମସ୍ତ ସୌଭାଗ୍ୟ ଓ ସମସ୍ତ ଭବିଷ୍ୟତ ଅମଙ୍ଗଳକୁ ନାସ୍ତି ବାଣୀ ଶୁଣାଇଛି ଏବଂ ସେଇ ପ୍ରଭୁଙ୍କ ନାମ ଯୋଗୁ ହିଁ ପର୍ବତଠୁ ବଳି ବରିଠ ଦୁଃଖ ସାମାନ୍ୟ କୁଟା-ଖଣ୍ଡ ପରି ଜଣାପାଉଛି ।" ତେଣୁ ଆମେ ନିର୍ଣ୍ଣିତରୂପେ କହିପାରିବା ଯେ କବି ତାଙ୍କର ତରୁଣ ଜୀବନର ଛିଣ୍ଡାକନା ଓ ମାଟିର ପାତ୍ର କଥା ଯାହା ଘୋଷଣା କରିଚନ୍ତି ତାହାର ଯଥାର୍ଥ ଆବଶ୍ୟକତା ରହିବ କେବଳ ଆଗ୍ରହର ସହିତ ତାଙ୍କ ପ୍ରାଥମିକ ଜୀବନର ଦୁଃଖ ଅଭାବ ଭିତରେ ବଞ୍ଚିରହିବା ପାଇଁ ନୁହେଁ; ବରଂ ତାଙ୍କ ଜୀବନର ଗୁରୁତ୍ୱପୂର୍ଣ୍ଣ ଅଭିଜ୍ଞତାର ବିକାଶ ପାଇଁ । କାରଣ ଭଗବାନଙ୍କ ସୃଷ୍ଟିରେ ଯିଏ ହତଭାଗା ଏବଂ ଅତିଶୟ ଦୀନଦୁଃଖୀ, ଭଗବାନ ତାଙ୍କୁ ପରିତ୍ରାଣ କରନ୍ତି ।

ସେତେବେଳେ ଯେଉଁ ଅବସ୍ଥା ଭିତରେ ତୁଳସୀଦାସ ରହିଥିଲେ ସେ ନିଶ୍ଚୟ ସ୍ୱଭାବତଃ ଆକୃଷ୍ଟ ହୋଇ ଭ୍ରମଣକାରୀ ସାଧୁ-ଦଳରେ ପ୍ରବେଶ କରିଥିବେ । ସେତେବେଳର ସମାଜରେ ଏଇ ସାଧୁଦଳର ଗୋଟିଏ ସୁପରିଚିତ ଗୋଷ୍ଠୀ ଗଠିତ ହୋଇ ରହିଥିଲା । ମୋଗଲ ସମ୍ରାଟ୍‌ମାନଙ୍କ ରାଜତ୍ୱ ସମୟରେ ଭାରତୀୟ ସମାଜ ବହୁ

ସ୍ତରରେ ବିଭକ୍ତ ହୋଇଥିଲା । ପ୍ରଥମ ସ୍ତରର ବ୍ୟକ୍ତିମାନେ ହେଉଚନ୍ତି ରାଜା ଏବଂ ରାଜକର୍ମଚାରୀବର୍ଗ; ଯାହାଙ୍କର ଜୀବନ-ଯାପନ ପ୍ରଣାଳୀ ଅତି ଉଚ୍ଚକୋଟୀର ଥିଲା । ଦ୍ୱିତୀୟ ସ୍ତର ସାଧାରଣ ଜନତା, କୃଷକ, ବଣିକ ଏବଂ ମୂଲିଆଙ୍କୁ ନେଇ ଗଠିତ । ଏମାନେ ସାଧାରଣ ସମୟରେ ସାମାନ୍ୟ ଗଣ୍ଡେ ଖାଇବାକୁ ପାଉଥିଲେ । ଦୁର୍ଭିକ୍ଷ ଏବଂ ଅନାଟନ ଯେଉଁ ବର୍ଷ ପଡ଼େ, ସେତେବେଳେ ଏମାନେ ପ୍ରକୃତରେ ଘୋର କଷ୍ଟ ଅନୁଭବ କରୁଥିଲେ । ତୃତୀୟ ସ୍ତରର ବ୍ୟକ୍ତିମାନେ ହେଉଚନ୍ତି ସାଧୁ ସନ୍ନ୍ୟାସୀ ଏବଂ ପଣ୍ଡିତମଣ୍ଡଳୀ । ଏମାନେ ସଂସାରକୁ ଖାତିର କରୁ ନ ଥିଲେ ଏବଂ ଶିକ୍ଷା ଓ ଦର୍ଶନ ଆଲୋଚନା ପାଇଁ ବିଦ୍ୟାଳୟମାନ ବସାଇ ରହୁଥିଲେ । କେତେକ ପଳାୟନପନ୍ଥୀଙ୍କୁ ଛାଡିଦେଲେ ବହୁ ଲୋକ ଆର୍ଥିକ ଆବଶ୍ୟକତାର ଚାପରୁ ହେଉ, କିମ୍ବା ସାମାଜିକ କଠୋର ପ୍ରଥାର ଚାପରୁ ହେଉ, ଏହି ସାଧୁ ସନ୍ନ୍ୟାସୀଦଳରେ ଆନ୍ତରିକତାର ସହ ଯୋଗଦେଇ ବେଶ୍ ନିରାପଦ ଆଶ୍ରୟ ଏବଂ ମାନସିକ ଶାନ୍ତି ପାଉଥିଲେ । ଅବସ୍ଥାର ନାନା ଅସୁବିଧାକୁ ଅତିକ୍ରମ କରିବା ପାଇଁ ଜ୍ଞାନ ଆହରଣ ଏବଂ ତୀର୍ଥଯାତ୍ରା ସମୟରେ ନାନାପ୍ରକାର ଜୀବନରୁ ପର୍ଯ୍ୟବେକ୍ଷଣ କରିବା ପାଇଁ ଏହି ଦଳରେ ବହୁ ସୁଯୋଗ ରହିଥିଲା ।

ମନେହୁଏ ତାଙ୍କର ଭାଗ୍ୟ ଏବଂ ଅବସ୍ଥାଚକ୍ର ତୁଳସୀ ଦାସଙ୍କୁ ଜୀବନର ପ୍ରଥମାବସ୍ଥାରୁ ଏହି ଭ୍ରାତୃତ୍ୱର ରାସ୍ତା ଉପରେ ପଦାର୍ପଣ କରାଇଥିଲା । 'ବିନୟ ପତ୍ରିକା'ରେ ସେ ଏହିଭଳି ଲେଖିଚନ୍ତି : "ମୋର ଶୋଚନୀୟ ଅବସ୍ଥାରେ କରୁଣା ପ୍ରକାଶ କରି ସାଧୁମାନେ ମୋତେ କହିଥିଲେ 'ଦୁଃଖ କରନା' ।"

ବୋଧହୁଏ ନରହରି ଦାସ ବା ନରହର୍ଯ୍ୟାନନ୍ଦ ନାମକ ଜଣେ

ଶୁଦ୍ଧପୂତ ବ୍ରାହ୍ମଣ ନିଜର ବାତ୍ସଲ୍ୟପୂର୍ଣ୍ଣ ତଳେ ତୁଳସୀ ଦାସଙ୍କୁ ଆଶ୍ରୟ ଦେଇଥିଲେ । ଏହି ଗୁରୁଶିଷ୍ୟ ମିଳନର କେତେକ ସଙ୍କେତ 'ବିନୟ ପତ୍ରିକା'ର କେତେକ ଲେଖାରେ ପରିଦୃଷ୍ଟ ହୁଏ । "କର୍ମ ଏବଂ ଅହଙ୍କାରର ନିଗଡ଼ ବନ୍ଧନରେ ବାନ୍ଧି ହୋଇ ମୁଁ ବହୁ ଦୁଃଖ ପାଇଲି; କିନ୍ତୁ ମୁଁ ଯେତେବେଳେ ଗଭୀର ଦୁଃଖରେ ଘାଣ୍ଟି ହେଉଛି ବୋଲି ଦେଖିଲେ, ଦୁଃଖୀ ଓ ନିରାଶ୍ରୟର ପ୍ରଭୁ ଶ୍ରୀରାମ ମୋତେ ଏହି କର୍ମବନ୍ଧନରୁ ମୁକ୍ତ କଲେ । ଯେଉଁ ମୁହୂର୍ତ୍ତରେ ଗୁରୁ ମୋତେ ପ୍ରଶ୍ନ ପଚାରିଲେ, ମୁଁ ଉତ୍ତର ଦେଲି—'ମୁଁ ଆପଣଙ୍କ ସେବା କରିବାକୁ ଚାହେଁ । ମୋର କେହି ନାହିଁ, ଯାହାକୁ ମୁଁ ନିଜର ବୋଲି ଡାକି ପାରିବି । ମୁଁ ଆପଣଙ୍କ ପାଦପଦ୍ମକୁ ଧରୁଛି ।' ଗୁରୁ ମୋ ପିଠିରେ ସ୍ନେହରେ ହାତ ମାରି ମୋର ହାତ ଦୁଇଟିକୁ ଧରିଲେ ଏବଂ ମୋତେ ତାଙ୍କ ନିଜର ଶିଷ୍ୟ କରିନେଲେ ।" ପ୍ରକୃତରେ ଏହି ତରୁଣ ବାଳକଟି ଅନ୍ତରର ସହ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ପ୍ରତିଦିନ ମୁଠିଏ ଖାଇବା ଏବଂ ଖଣ୍ଡିଏ ପିନ୍ଧିବା ହିଁ ତାଙ୍କର ଏକମାତ୍ର ଆବଶ୍ୟକତା ଥିଲା ଏବଂ ତଦ୍ଦ୍ୱାରା ସେ ବେଶ୍ ଭଲରେ ରହିପାରୁଥିଲେ । ଅନେକ ତାଙ୍କୁ ଘୃଣାଚକ୍ଷୁରେ ଦେଖୁଥିଲେ ମଧ୍ୟ ତହିଁରେ ତାଙ୍କ ମନ ବିଚଳିତ ହେଉ ନଥିଲା । ଜାତି ଭିତରେ ଜଣେ ଧର୍ମଯାଜକ ପରି ଧର୍ମ ସମ୍ବନ୍ଧୀୟ ନେତୃତ୍ୱ ନେବା କିମ୍ବା ଗୃହସ୍ଥ ଜୀବନରେ ପ୍ରବେଶ କରିବାର ଅଭିଳାଷ ତାଙ୍କର ନଥିଲା । ରାମନାମ ଜପ ହିଁ ତାଙ୍କର ଏକମାତ୍ର ବ୍ରତ ଥିଲା । ସମସ୍ତ ବିବରଣୀରୁ ଜଣାଯାଏ ଯେ ତୁଳସୀଦାସ ଜଣେ ଶିକ୍ଷାଶୀଳ ପ୍ରକୃତିର ଶିଷ୍ୟ ଥିଲେ । ସେ ପାର୍ଥିବ ପ୍ରକୃତିର ନଥିଲେ । ଗୁରୁ ନରହରି ଦାସ ଯେ ତାଙ୍କର ଏହି ନୂତନ ଶିଷ୍ୟ ଉପରେ ବେଶ୍ ସନ୍ତୁଷ୍ଟ ରହୁଥିଲେ, ଏହା ଦୁଇଟିବାରେ

କିଛି ଅସୁବିଧା ନାହିଁ । ଇତିମଧ୍ୟରେ ତାଙ୍କ ଶିଷ୍ୟ "ରାମବୋଲା" ଏହି ନାମରେ ପରିଚିତ ହୋଇଗଲେଣି ଏବଂ ଏହି ନାମ ଧରି ଡାକିଲେ ସେ ବି ଉତ୍ତର ଦିଅନ୍ତି । ଆମେ ଜାଣୁନା—ଏହି ନାମଟି ତାଙ୍କୁ କିଏସେ ଦେଲା; କିନ୍ତୁ କେତେ କାଳଧରି ଏହି ନାଆଁଟି ତାଙ୍କର ରହିଥିଲା । ସେ ସବୁବେଳେ ରାମନାମ ଉଚ୍ଚାରଣ କରୁଥିବାରୁ ଏହି ନାଆଁଟି ତାଙ୍କୁ ବେଶ୍ ସାଜୁଥିଲା । "ମୁଁ ରାମଙ୍କର ସେବକ, 'ରାମବୋଲା' ନାମ ମୋତେ ରାମ ଦେଇଛନ୍ତି ।" ଏହାହିଁ ତାଙ୍କ ପକ୍ଷରେ ଯଥେଷ୍ଟ ସଂପଦ ଥିଲା । କିନ୍ତୁ ସାରା ଜୀବନଧରି ସେ ତୁଳସୀ ଦାସ ନାମରେ ସୁପରିଚିତ ଥିଲେ । ସମ୍ଭବତଃ ତାଙ୍କ ଗୁରୁ ତାଙ୍କୁ ନୂଆ ନାଁଟି ଦେଇଥିଲେ ।

କଥିତ ଅଛି ଯେ ତାଙ୍କର ଗୁରୁ ନରହରି ଦାସ ବା ନର-ହର୍ଯାନନ୍ଦ ରାମାନନ୍ଦପନ୍ଥୀ ଥିଲେ । ସେ ନିଶ୍ଚିତରୂପେ ରାମଙ୍କର ପରମ ଭକ୍ତ ଥିଲେ ଏବଂ ରାମଶାସ୍ତ୍ରରେ ସୁପଣ୍ଡିତ ଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ରାମନାମ ଜପ ହିଁ ବିରାଟ ଶୃଙ୍ଖଳା, ଯାହା ଆଧ୍ୟାତ୍ମିକ ଉନ୍ନତିର ପଥ ସୁଗମ କରିଦିଏ । ଏହି ସରଳ ବିଶ୍ୱାସକୁ ତାଙ୍କ ଗୁରୁ ତାଙ୍କ ମନ ଭିତରେ ଭର୍ତ୍ତି କରିଦେଇଥିଲେ—"ଗୁରୁ ମୋତେ ଶିଖାଇଛନ୍ତି ରାମଙ୍କ ପ୍ରତି ଭକ୍ତି ସବୁଠୁ ବଡ଼ ଜିନିଷ । ମୁଁ ଏହି ସିଧାସଳଖ ବାଟକୁ ଭଲପାଏ ଏବଂ ଏହିପଥ ହିଁ ମୋର ରାଜପଥ ।"

କବି ତାଙ୍କର ଶିକ୍ଷା ସମ୍ପର୍କରେ ଅନେକମାନ ପ୍ରତ୍ୟକ୍ଷ ଉଲ୍ଲେଖ କରିଛନ୍ତି । ସେଥିରେ ସେ କହିଛନ୍ତି ଯେ, ସୂକରଖେତଠାରେ ସେ ରାମଙ୍କ କାହାଣୀ ଶୁଣିଥିଲେ । ସେ ସେତେବେଳେ ଏତେ ଅଳ୍ପ ବୟସର ବାଳକ ଥିଲେ ଯେ, ରାମକାହାଣୀର ପୂର୍ଣ୍ଣ ଭାବଧାରାରେ ଅନୁପ୍ରାଣିତ ହୋଇପାରୁନଥିଲେ । କିନ୍ତୁ ତାଙ୍କର ଗୁରୁ ରାମକାହାଣୀକୁ

ବାରମ୍ବାର ତାଙ୍କ ପାଖରେ ଆବୃତ୍ତି କରୁଥିଲେ । ସେ ତାଙ୍କ ସ୍ୱାଭାବିକ ନମ୍ରତା ସହିତ ବ୍ୟକ୍ତ କରିଚନ୍ତି ଯେ, ଜୀବନର ଏଇ ଅବସ୍ଥାରେ ସେ ରାମ-ଭାବର ସମସ୍ତ ଅର୍ଥ ଭିତରୁ ସାମାନ୍ୟ ଟିକିଏ ମାତ୍ର ବୁଝିପାରୁଥିଲେ । ଯାହା ହେଉ, ଆମେ ନିଶ୍ଚିତରୂପେ କହିପାରିବା ଯେ ସେ ଚିହ୍ନଟିକିକ ତାଙ୍କ ମନ ଉପରେ ସ୍ଥାୟୀ ଓ ଗଭୀର ଗାର କାଟିପାରିଥିଲି । ସେ ସେହିଦିନଠାରୁ ଗଭୀର ସଂକଳ୍ପ କଲେ ଯେ, ଟିକିଏ ଭଲ ସମୟ ପାଇଲେ, ସେ ରାମକଥା ଲେଖିବେ; ଜନ ସାଧାରଣଙ୍କ ଭାଷାରେ ଯଦ୍ଦ୍ୱାରା ତାଙ୍କ ଆତ୍ମାର ଆନନ୍ଦ ଆସିବ ଏବଂ ଜନସାଧାରଣଙ୍କର ଉପକାର ହୋଇପାରିବ ।

ଯେତେବେଳେ କବି ରାମଚରିତ ବର୍ଣ୍ଣନା ଆରମ୍ଭ କଲେ, ସେତେବେଳେ ସେ ତାଙ୍କ ଗୁରୁଙ୍କ 'ପାଦପଦ୍ମ' କୃତଜ୍ଞଭାବରେ ସ୍ମରଣ କରିବାକୁ ପଶ୍ଚାତ୍‌ପଦ ହୋଇ ନ ଥିଲେ । "ଯାହାଙ୍କର ବାଣୀ ସୂର୍ଯ୍ୟରଶ୍ମି ପରି ସମସ୍ତ ମାୟା ମୋହର ଅନ୍ଧକାରକୁ ଦୂର କରିଦେଇ ପାରିଲି, ଯାହାଙ୍କର ଶିକ୍ଷା ଓ ଉପଦେଶଦ୍ୱାରା ଲୁକ୍କାୟିତ ରାମ-କାହାଣୀର ସମସ୍ତ ମଣି-ମାଣିକ୍ୟ ଉଜ୍ଜ୍ୱଳରୂପେ ପ୍ରତିଭାତ ହୋଇ ଉଠିଲି, ସେଇ କରୁଣାସାଗର ହରି ନିଜେ ନରରୂପରେ ଦଣ୍ଡାୟମାନ ।" ତାଙ୍କର ଗୁରୁ, ତାଙ୍କର ପ୍ରଥମ ଶିକ୍ଷାଶାଳା, ସରଯୂ ନଦୀ, ଅଯୋଧ୍ୟାର ସେଇ ଜନଜୀବନ ଓ ତାର ସଂସ୍କୃତି ଯେଉଁଠି ତାଙ୍କର ବାଲ୍ୟଜୀବନ ଲୀଳାଚଞ୍ଚଳ ହୋଇ ଉଠିଥିଲି,—ଏ ସବୁର ଶାଶ୍ୱତ ମୁଦ୍ରା ତାଙ୍କର ସେଇ ମାନସିକ ଗଠନ ପ୍ରକ୍ରିୟା ଭିତରେ ଏବଂ ନିଜର ଲେଖାବଳୀ ଭିତରେ ରହିଗଲି ।

ତୁଳସୀ ଦାସ ବହୁବର୍ଷ ତାଙ୍କ ଗୁରୁଙ୍କ ପାଦତଳେ ବସି କଟାଇଥିଲେ ଏବଂ ସେଇଠାରେ ନିଜର ଇଷ୍ଟଦେବରୂପେ ଏବଂ

ପୃଥିବୀର ସର୍ବବ ଅନ୍ତର୍ନିହିତ ପରିଦୃଶ୍ୟମାନ ସତ୍ତ୍ୱରୂପେ ରାମଙ୍କୁ ଗଭୀର ଭାବରେ ଅନୁଭବ କରିବାକୁ ଲାଗିଲେ । ଶୂକରଖେତରେ ଅବସ୍ଥାନ ସମୟରେ ରାମଙ୍କ ପ୍ରତି ତାଙ୍କର ତ ଅଚଳା ଭକ୍ତି ଥିଲା । ଏତଦ୍‌ବ୍ୟତୀତ ସେ କି ପୁସ୍ତକ ପଢ଼ୁଥିଲେ ଏବଂ ତାଙ୍କ ଚିନ୍ତାଧାରାର ପ୍ରକୃତି କଣ ଥିଲା, ଏ ସବୁ କଥା ସେ ବିଶେଷରୂପେ କହିନାହାନ୍ତି; କିନ୍ତୁ ସେ ଯେ ସାଂପ୍ରଦାୟିକ ଓ ଗୋଷ୍ଠୀଗତ ପକ୍ଷପାତିତାରୁ ଅସାଧାରଣ ଭାବରେ ମୁକ୍ତ ଥିଲେ, ଶିକ୍ଷା ପ୍ରତି ଅତୀବ ଆଗ୍ରହୀ ଥିଲେ ଏବଂ ଜ୍ଞାନଲାଭ ପାଇଁ ତାଙ୍କର ଗଭୀର ପିପାସା ଥିଲା, ଏ ସବୁ ସନ୍ଦେହାତୀତ । 'ମୂଳ ଗୋସାଇଁଚରିତ'ର ଗ୍ରନ୍ଥକାର ଗୋଟିଏ ଲୋକକଥାକୁ ସମର୍ଥନ କରି କହନ୍ତି ଯେ ତୁଳସୀ ଦାସ ତାଙ୍କ ଗୁରୁ ନରହରି ଦାସଙ୍କ ପାଖେ କେବଳ କେତୋଟି ବର୍ଷ ମାତ୍ର ରହିଥିଲେ । ଗୁରୁ ନରହରି ଦାସ ଏବଂ ତାଙ୍କର ଶିଷ୍ୟଦଳ ଥରେ କାଶୀକୁ ଯାତ୍ରା କଲେ । ସେଇ ପ୍ରାଚୀନ ଶିକ୍ଷାପୀଠ କାଶୀରେ ତାଙ୍କର ବିଦ୍ୟାଧ୍ୟୟନ କରିବାର ସୁଯୋଗ ଏଇପରି ଭାବରେ ଖୋଲିଗଲା । ଆଶାୟୀ ଛାତ୍ରମାନଙ୍କୁ ଜ୍ଞାନଦାନ କରିବାରେ ତତ୍‌କାଳୀନ ଅନ୍ୟତମ ଗଭୀର ଜ୍ଞାନବନ୍ତ ପଣ୍ଡିତ ଶେଷ ସନାତନଙ୍କର ପ୍ରଗାଢ଼ ଅନୁରାଗ ଥିଲା । ନରହରି ଦାସଙ୍କର ଏଇ ତରୁଣ ନିଷ୍ଠାପର ଶିଷ୍ୟଟିର ପ୍ରତିଭାକୁ ସେ ବୋଧହୁଏ ଲକ୍ଷ୍ୟ କରିଥିବେ । ଯେଉଁ ମୁହୂର୍ତ୍ତରେ ଆପାତତଃ ନରହରି ଦାସ ଜାଣିପାରିଲେ ଯେ, ତୁଳସୀଦାସ ଶେଷ-ସନାତନଙ୍କ ପାଖରେ ରହି ବିଦ୍ୟା ଅଧ୍ୟୟନ କରିବାକୁ ଉତ୍କଣ୍ଠିତ, ସେ ତାଙ୍କୁ କାଶୀରେ ରହିବା ଲାଗି ଅନୁମତି ଦେବାକୁ ଠିକ୍ କଲେ । ତୁଳସୀ ଦାସଙ୍କ ଲେଖାରେ ନିଗୂଢ଼ ପାଣ୍ଡିତ୍ୟର ଭଣ୍ଡାର ରହିଛି ଏବଂ ଯେକୌଣସି ବ୍ୟକ୍ତି ସେହି ପାଣ୍ଡିତ୍ୟର ଯଦି ପରିଚୟ ପାଏ ସେ ନିଶ୍ଚୟ ଏକମତ

ହେବ ଯେ, ତୁଳସୀ ଦାସ ତାଙ୍କର ନୂତନ ଗୁରୁଙ୍କ ପାଖେ ରହି ସର୍ବୋତ୍କୃଷ୍ଟ ଜ୍ଞାନ ପାଇବାରେ ସମସ୍ତ ମନଯୋଗ କରିଥିଲେ । ମୌଳିକ ବିଷୟବସ୍ତୁର ଆହରଣ ପାଇଁ ପୂର୍ବତନ ସୂରିମାନଙ୍କ ଦ୍ୱାରା ଲିଖିତ ବହୁପ୍ରକାର ବେଦ, ଉପନିଷଦ୍, ପୁରାଣ ଏବଂ ରାମାୟଣ ପାଖରେ ସେ କିପରି ଗଭୀରଭାବେ ଋଣୀ—ଏ କଥା ସେ ରାମଚରିତ ମାନସର ପ୍ରାରମ୍ଭିକ କବିତାମାନଙ୍କରେ କହିଚନ୍ତି । ସେ ଯେଉଁ ଶିକ୍ଷା ଲାଭ କରିଥିଲେ ତାହା ନିଶ୍ଚୟ କାବ୍ୟ ଦର୍ଶନ ଧର୍ମ ଓ ଜ୍ୟୋତିଷକୁ ମିଶାଇ ଜ୍ଞାନର ସକଳ ଶାଖା-ପ୍ରଶାଖାକୁ ସ୍ପର୍ଶ କରି ବ୍ୟାପକ ଓ ବିସ୍ତୃତ ଥିଲା । ଶେଷ-ସନାତନଙ୍କ ପ୍ରଭାବରେ ଅଦ୍ୱୈତ-ଦର୍ଶନ ପ୍ରତି ତାଙ୍କର ଯେ ସମ୍ମାନ ଥିଲା—ଏହା ଅସମ୍ଭବ ନୁହେଁ । ବେଦ ଓ ଅନ୍ୟାନ୍ୟ ଶାସ୍ତ୍ରସବୁ କଣ କହୁଚନ୍ତି, ସେସବୁ କିଛି ନ ଜାଣି ଅନେକ ବ୍ୟକ୍ତି ବେଦ ଓ ଶାସ୍ତ୍ରମାନଙ୍କୁ ବଡ଼ ନିମ୍ନ ଦୃଷ୍ଟିରେ ଦେଖୁଥିଲେ । ତୁଳସୀ ଦାସ ଏ ସବୁ ଦେଖି ବଡ଼ ଅସନ୍ତୁଷ୍ଟ ହୋଇ ପଡ଼ୁଥିଲେ । ସେମାନଙ୍କ ପ୍ରତି ଏଇ ଅସନ୍ତୁଷ୍ଟ ଭାବ ହିଁ ତୁଳସୀ ଦାସଙ୍କ ପାଣ୍ଡିତ୍ୟମୟ ଶିକ୍ଷାର ମୂଳ କାରଣ । ସେହି ସମୟରେ ତାଙ୍କ ଜୀବନର ଅଭିଜ୍ଞତା ଏବଂ ସ୍ୱାଧୀନ ଚିନ୍ତାଧାରା ତାଙ୍କର ଶିକ୍ଷା ବାସ୍ତବରେ ପୂର୍ଣ୍ଣାଙ୍ଗ ହୋଇଥିଲା ।

# 3 ବିବାହ ଓ ଗୃହତ୍ୟାଗ

ତୁଳସୀ ଦାସ ତାଙ୍କର ବିବାହ ଏବଂ ଗୃହସ୍ଥ ଜୀବନ ସମ୍ପର୍କରେ ତାଙ୍କ ଲେଖାବଳୀ ଭିତରେ ଯାହା ପ୍ରକାଶ କରିଛନ୍ତି, ତାହା ସାର୍ଥକ୍ ଭାବରେ ରହିଛି ମାତ୍ର । ଦୁର୍ଭାଗ୍ୟର କଷାଘାତ, ଲୋକମାନଙ୍କର ଦୁର୍ବ୍ୟବହାର, ତାଙ୍କ ଗୁରୁଙ୍କ ଶିକ୍ଷା ଏବଂ ଉପଦେଶ ଓ ପ୍ରାଚୀନ ପୁସ୍ତକମାନଙ୍କର ଚିନ୍ତାଶୀଳ ଅଧ୍ୟୟନ—ଏ ସବୁ ତାଙ୍କୁ ନିଶ୍ଚିତ-ରୂପେ ପ୍ରବର୍ତ୍ତନ ଦେଇଥିଲା ଯେ, ତାଙ୍କର ସୁଦୃଢ଼ ଆଶ୍ରୟସ୍ଥଳ ହେଉଛି ରାମ ଏବଂ ଐଶ୍ୱରିକ ଜୀବନ ।

ଯେତେବେଳେ ସେ ବେଶ୍ ସୁନ୍ଦର ଭ୍ରାମ୍ୟମାଣ ଜୀବନ ଅବଲମ୍ବନ କରି ରାମନାମ ଉଚ୍ଚାରଣପୂର୍ବକ ନିଜର ଜୀବିକା ନିର୍ବାହ କରୁଥିଲେ, ସେତେବେଳେ ସେ ସ୍ୱଗୃହକୁ ଫେରିଯିବା ଲାଗି ଇଚ୍ଛା ପ୍ରକାଶ କରିଥିଲେ । ସେହି ଦିନର କଥାକୁ ସେ ତାଙ୍କର ପରବର୍ତ୍ତୀ ଗ୍ରନ୍ଥରେ ସ୍ମରଣ କରି ଦୁଃଖ ପ୍ରକାଶ କରିଛନ୍ତି ଯେ, ସେ କେଡ଼େ ନିର୍ବୋଧ ଥିଲେ; କାରଣ ତଦ୍ୱାରା "ପ୍ରଭୁଙ୍କ ସହ ତାଙ୍କର ଯେଉଁ ବନ୍ଧନ ରହିଛି ସେ ବନ୍ଧନର ସୂତ୍ର ଛିଣ୍ଡିଯିବ ଏବଂ ସେ ସଂସାରୀ-ଜୀବନର ପଥରେ ବନ୍ଧା ହୋଇ ରହିଯିବେ ।"

ତାଙ୍କର ଗୁରୁ ଶେଷ-ସନାତନ ମରିଯିବା ପରେ ଭବିଷ୍ୟତ ସମ୍ପର୍କରେ ତାଙ୍କୁ ଗୋଟିଏ ଶେଷ ନିଷ୍ପତ୍ତି ଗ୍ରହଣ କରିବାକୁ ପଡ଼ିଥିଲା । ଶେଷ-ସନାତନଙ୍କ ମୃତ୍ୟୁ ପରେ ତାଙ୍କ ପ୍ରତି କାଶୀଧାମ ଆଉ ଆକର୍ଷଣୀୟ ହୋଇ ରହିପାରିଲା ନାହିଁ । ସେ ସାଧୁସନ୍ନ୍ୟାସୀଦଳରେ ବାସ କରିଥିଲେ ସତ୍ୟ; କିନ୍ତୁ ସେମାନଙ୍କ ସହିତ ନିଜକୁ ମିଶାଇ

ପାରିନଥିଲେ ।

କିମ୍ବଦନ୍ତୀ ଏବଂ ମୂଳ ଗୋସାଇଁ ଚରିତର ସାକ୍ଷ୍ୟରୁ ଜଣାଯାଏ ଯେ ଏଇ ବ୍ରାହ୍ମଣ ବାଳକର ବ୍ରତୋପନୟନ ଯଥାବିଧି ଯଥା-ସମୟରେ ଅନୁଷ୍ଠିତ ହୋଇଥିଲା ।

ସ୍ୱଭାବତଃ ଅଧ୍ୟୟନ ଶେଷରେ ଏଇ ଯୁବକ କିଛି ପାଣ୍ଡିତ୍ୟ ଅର୍ଜନ କରି ଗୋଟିଏ ସୁନ୍ଦର ବ୍ୟକ୍ତିତ୍ୱର ଅଧିକାରୀ ହୋଇଥିବେ ଏବଂ ବିଗ୍ରୁରିଥିବେ ନିଜର ପୈତୃକ ବାସଭୂମିକୁ ଫେରିଯାଇ ସେଠି ଜଣେ ଗୃହସ୍ଥଭାବରେ ବସବାସ କରିବେ; ଦୀର୍ଘଦିନର ଅନୁପସ୍ଥିତି ପରେ ସେ ନୂଆକରି ଗୋଟିଏ ବାସଗୃହ ପ୍ରସ୍ତୁତ କରିବେ । ଥରେ ଜୀବନରେ ପୁନଶ୍ଚ ଘରଦ୍ୱାର କରି ରହିଲା ପରେ ସ୍ୱଜାତିର ଗୋଟିଏ ବାଳିକା ପାଇଁ ସେ ଯୋଗ୍ୟ ବରପାତ୍ରଟିଏ ବୋଲି ବିବେଚିତ ହୋଇ-ଥିବେ । କବିଙ୍କ ଲେଖା ଛଡ଼ା ଅନ୍ୟ ଗ୍ରନ୍ଥକାରଙ୍କ ଲେଖାସବୁରୁ ବହୁ ପ୍ରମାଣ ମିଳୁଛି ଯେ, ଦୀନବନ୍ଧୁ ପାଠକଙ୍କର ଗୋଟିଏ ଝିଅ ଥିଲା । ଲୋକମୁଖରୁ ଜଣାଯାଏ, ତାଙ୍କ ନାଁ ରତ୍ନାବଳୀ । ରତ୍ନାବଳୀ ଅସାଧାରଣ ବୁଦ୍ଧିମତୀ, ରୂପବତୀ, କାନ୍ତିମତୀ । ସେ ସ୍ୱାମୀଙ୍କ ସହିତ ସକଳ ଧର୍ମକାର୍ଯ୍ୟରେ ଭାଗ ନେଉଥିଲେ ଏବଂ ରାମଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କରୁଥିଲେ । ତାଙ୍କର ବୈବାହିକ ଜୀବନ ବେଶ୍ ସୁଖମୟ ଥିଲା । ରାମ-କାହାଣୀର ମୂଳ ଭିତ୍ତି ଯାହାଙ୍କଠାରେ ସୁପ୍ରତିଷ୍ଠିତ ହୋଇପାରିଥିଲା, ସେଇ ଯୁବକ ସ୍ୱାମୀ ତୁଳସୀ ଦାସ ଆଗ୍ରହୀ ଜନତା ଆଗରେ ରାମ-କାହାଣୀ ଆବୃତ୍ତି କରି ଜୀବିକା ଅର୍ଜନ କରୁଥିଲେ । 'ବିନୟ ପତ୍ରିକା'ରେ ଉଲ୍ଲିଖିତ କେତୋଟି ବିକ୍ଷିପ୍ତ ଦୃଷ୍ଟାନ୍ତରୁ ଜଣାଯାଏ, ସେ ତାଙ୍କର ମଧ୍ୟମ ବୟସରେ ବାଣିଜ୍ୟ, କୃଷି ଏବଂ ଅନ୍ୟାନ୍ୟ ଉପାୟରେ ଅର୍ଥ ଉପାର୍ଜନ କରୁଥିଲେ ।

ଗୋଟିଏ **ଘଟଣା** ତାଙ୍କ ଜୀବନର ଗତିପଥରେ **ବିରାଟ ପରିବର୍ତ୍ତନ** ଆଣିବାକୁ ଯିବା ପୂର୍ବରୁ, ତାଙ୍କ ବିବାହିତ ଜୀବନର ମଧୁମୟ ଦିନଗୁଡ଼ିକ କ୍ଷିପ୍ର ଗତିରେ ବିତିବାକୁ ଲାଗିଲା । ସେ ନିଜର ଘର ଏବଂ ପରିବାର ପରିତ୍ୟାଗ କରିବା ସମ୍ପର୍କରେ 'ଭକ୍ତମାଳ'ର ଭାଷ୍ୟକାର ବାବା ବେଣୀ ମାଧବ ଦାସ ଓ ପ୍ରିୟ ଦାସ ଉଭୟ ଯେଉଁ ମନ୍ତବ୍ୟ ଦେଇଛନ୍ତି ତାହା ସମାନ । ତୁଳସୀ ଦାସ ତାଙ୍କ ପତ୍ନୀକୁ ଏତେ ଭଲପାଉଥିଲେ ଯେ, ସେ ତାଙ୍କ ବାପଘରକୁ ଟିକିଏ ବୁଲି ଯିବା ପାଇଁ କହିଲେ ମଧ୍ୟ ପାଖରୁ ଛାଡ଼ନ୍ତି ନାହିଁ । ଦିନେ ସ୍ୱାମୀଙ୍କୁ ନ କହି ସ୍ୱାମୀ ଘରେ ନ ଥିବାବେଳେ, ତାଙ୍କୁ ଦେଖିବାକୁ ଆସିଥିବା ତାଙ୍କ ଭାଇ ସାଙ୍ଗରେ ବାପଘରକୁ ଚାଲିଗଲେ । ଯୁବକ କବିଙ୍କୁ ଏ ବିଚ୍ଛେଦ ଦୁଃସହ ବୋଧ ହେଲା । ବାଟରେ ତାଙ୍କୁ ଗୋଟିଏ ନଦୀ ପାର ହେବାକୁ ପଡ଼ିଥିଲେ ମଧ୍ୟ, ସେଇ ରାତାରାତି ସେ ତାଙ୍କ ଶ୍ୱଶୁର ଘରକୁ ଚାଲିଲେ । ପ୍ରିୟ ସ୍ୱାମୀଙ୍କର ଏଇ ଉତ୍କଣ୍ଠା ଏବଂ ଏପରି କଷ୍ଟ କରି ଆସିବାର ଦେଖି ତାଙ୍କ ପତ୍ନୀ ଅବାକ୍ ହୋଇଗଲେ । ସେ ଅନୁଭବ କରିଥିବେ ସ୍ୱାମୀ ତାଙ୍କର ସୀମା ଲଙ୍ଘନ କରିଛନ୍ତି; ତେଣୁ ତାଙ୍କୁ ଗାଳିଦେଇ କହିଲେ, "ମୋର ଏଇ ରକ୍ତ ମାଂସର ଦେହଖଣ୍ଡିକ ପାଇଁ ତୁମର ଏତେ ମମତା ! ତହିଁରୁ ଅର୍ଦ୍ଧେକ ତୁମର ଯେବେ ରାମଙ୍କ ପ୍ରତି ଥାଆନ୍ତା ଜୀବନର ଦୁଃଖ କଷ୍ଟ ଭୟରୁ ତୁମେ ପରିତ୍ରାଣ ପାଆନ୍ତ ।"

ଏଇ ବାଣୀ କବିଙ୍କ ଅନ୍ତଃସ୍ଥଳରେ ଗଭୀର ଭାବରେ ଭେଦ କଲା ଏବଂ ସେ ଘର-ସଂସାର ଛାଡ଼ି ଯିବାକୁ ଦୃଢ଼ ନିଷ୍ପତ୍ତି ଗ୍ରହଣ କରିନେଲେ । ତାଙ୍କ ଜୀବନରେ ଏହା ଗୋଟିଏ ସନ୍ଧିସ୍ଥଳ । ସେ ଯାହା ପାଇବାକୁ ଖୋଜିହେଉଥିଲେ, ତାର ପାଇଁ ସେ ଗୋଟିଏ

ସ୍ଥିର ସିଦ୍ଧାନ୍ତ ଗ୍ରହଣ କରିନେଲେ । ରାମପ୍ରେମ ଉପରେ ତାଙ୍କ ବିଶ୍ୱାସର ଯେ ମୂଳଦୁଆ ତାଙ୍କ ଗୁରୁଙ୍କ ଦ୍ୱାରା ଏବଂ ତାଙ୍କ ଜୀବନରେ ଅଭିଜ୍ଞତାଦ୍ୱାରା ଯେ ଖୁବ୍ ଭଲ୍‌ଭାବରେ ଆଗରୁ ପଡ଼ି-ସାରିଥିଲା, ଏଥିରେ ସନ୍ଦେହ କରିବାର ଅବକାଶ ନାହିଁ ।

ରାମ-କାହାଣୀ ଗାନ କରିବାର ଦକ୍ଷତା ଏବଂ ଦାମ୍ପତ୍ୟ ଜୀବନର ସୁଖ-ସୌଭାଗ୍ୟ, ବୈଚିତ୍ର୍ୟବିହୀନ ଏଇ ଗୃହସ୍ଥ ଜୀବନ ସହିତ ତାଙ୍କୁ ଚିରନ୍ତନ ଭାବରେ ବାନ୍ଧି ରଖି ପାରିଲା ନାହିଁ । ବାହାରକୁ ଯାଇ ରାମଙ୍କୁ ସ୍ୱଚକ୍ଷୁରେ ମୁହାଁମୁହିଁ ଦେଖିବାର ଯେ ଅନ୍ତର୍ନିହିତ ବାସନା--ତାକୁ ପୁଣି ପ୍ରଜ୍ୱଳିତ କରିବା ପାଇଁ ଗୋଟିଏ ସାମାନ୍ୟ ଅଗ୍ନିକଣା ଯଥେଷ୍ଟ ଥିଲା । ତାଙ୍କ ବୈବାହିକ ଜୀବନର ସବିଶେଷ ବର୍ଣ୍ଣନା ସଂପର୍କରେ ସେ ଯେ ସଂପୂର୍ଣ୍ଣ ନୀରବ ଥିଲେ— ଏଥିରେ ବହୁ ଅର୍ଥବୋଧ ରହିଛି । କେବଳ ଇତସ୍ତତଃ ବିକ୍ଷିପ୍ତ ହୋଇ ରହିଥିବା ତାଙ୍କ ଲେଖାର ଗୋଟିଏ ପଂକ୍ତିରେ ସେ ସ୍ୱୀକାର କରିଛନ୍ତି ଯେ ତାଙ୍କର ପତ୍ନୀଙ୍କ ଉପଦେଶ ତାଙ୍କୁ ପ୍ରକୃତ ପ୍ରେମର ଶିକ୍ଷା ଦେଇଛି । "ଯୌବନ, ନାରୀ ଆଉ କାମ, ଏଇ ତିନି ବ୍ୟାଧି" କବିଳରେ ସେ ପଢ଼ିଛନ୍ତି ଏବଂ ତାହା ଯେ ତାଙ୍କ "ଯୁବକ ବୟସର ଅବିବେକୀ କାର୍ଯ୍ୟ"—ଏ କଥା ସେ 'ବିନୟ ପତ୍ରିକା'ରେ ଦୁଃଖର ସହିତ ପ୍ରକାଶ କରିଛନ୍ତି ।

ଗୌତମ ବୁଦ୍ଧଙ୍କଠୁ ଆରମ୍ଭ କରି ବିବେକାନନ୍ଦଙ୍କ ପର୍ଯ୍ୟନ୍ତ ଭାରତୀୟ ସାଧୁ-ସନ୍ନ୍ୟାସୀମାନେ ଘର-ସଂସାର ଛାଡ଼ିଛନ୍ତି କେବଳ କେଉଁଆଡ଼େ ପଳାଇଯିବା ପାଇଁ ନୁହେଁ; ରାସ୍ତା ଖୋଜିବା ଉଦ୍ଦେଶ୍ୟରେ । ସେମାନେ ସତ୍ୟର ଅନୁସଂଧାନରେ ଘର ଛାଡ଼ିଛନ୍ତି ଏବଂ ନିଜର ଜ୍ଞାନରାଶିକୁ ସ୍ୱଜାତି ଲୋକମାନଙ୍କୁ ବିତରଣ କରିଛନ୍ତି ।

ତାଙ୍କର ସେଇ ସମୟ୍ର ଏବଂ ତାଙ୍କ ଜୀବନର ପୂର୍ବାପର ଘଟଣାବଳି-ଦୃଷ୍ଟିରୁ ତୁଳସୀଦାସଙ୍କ ଗୃହସଂସାର ତ୍ୟାଗ ଏଇ ସାଧୁ-ସନ୍ନ୍ୟାସୀଙ୍କ ପରି ସ୍ଥିର ସିଦ୍ଧାନ୍ତମୂଳକ ଥିଲା । ଯେକୌଣସି ଦିଗରୁ ହେଉ, ହୁଏତ ପତ୍ନୀ ମରିଯିବା ପରେ କିମ୍ବା ଘରର ଆର୍ଥିକ ଅବସ୍ଥା ଖରାପ ହୋଇ ଆସିଲେ ଯେଉଁମାନେ ସନ୍ନ୍ୟାସୀ ପାଲଟି ଯାଉଥିଲେ, ସେମାନଙ୍କ ପ୍ରତି ତୁଳସୀ ଦାସଙ୍କର ମୋଟେ ଆଦର ଗୌରବ ନ ଥିଲା । ଏଇ ସ୍ଥିର ସିଦ୍ଧାନ୍ତ ନେବା ସମୟରେ ତାଙ୍କ ମନ ପରିପକ୍ୱ ଅବସ୍ଥାରେ ଥିଲା । ଆଧ୍ୟାତ୍ମିକ ଜ୍ଞାନ ଲାଭର ତୀର୍ଥ-ଯାତ୍ରାରେ ତାଙ୍କର ବିବାହ ଏବଂ ପାରିବାରିକ ଜୀବନ ଗୋଟିଏ ମଧ୍ୟବର୍ତ୍ତୀ କାଳ ବୋଲି ପ୍ରତୀତ ହୁଏ ।

# 4 ଗଭୀର ଅନ୍ୱେଷଣ

ଗୃହ ତ୍ୟାଗ ପରେ ପରେ ତୁଳସୀ ଦାସଙ୍କ ଜୀବନର ଅଧିକାଂଶ ବର୍ଷ ତାଙ୍କ ବ୍ୟକ୍ତିତ୍ୱର ଏବଂ ଦୃଷ୍ଟିଭଙ୍ଗୀର ବିକାଶ ଦିଗରେ ସଫଳକାମ ହୋଇପାରିଥିଲା । ଏହି ବର୍ଷମାନଙ୍କରେ ସେ ଦେଶର ଚାରିଆଡ଼େ ଭ୍ରମଣ କରିଥିଲେ । ସେ କେତେଠି କେତେ ଜ୍ଞାନ ଆହରଣ କରିଥିଲେ, ଲୋକ-ଚରିତ୍ର ପର୍ଯ୍ୟବେକ୍ଷଣ କରିଥିଲେ, କେତେ ସାଧୁ-ସନ୍ଥଙ୍କୁ ଭେଟିଥିଲେ ଏବଂ ଜୀବନର ନାନା ପ୍ରତ୍ୟକ୍ଷ ନୈରାଶ୍ୟ ଓ ବାଦବିସମ୍ବାଦ ଭିତରେ ସବୁ ଶେଷରେ ଧ୍ୟାନମଗ୍ନ ରହି ସେଇ ପରମବ୍ରହ୍ମଙ୍କୁ ଉପଲବ୍ଧି କରିଥିଲେ । ଯେତେଦୂର ସଂଭବ, ନିର୍ଦ୍ଦିଷ୍ଟ ତାରିଖ ବା ସୁବିସ୍ତୃତ ଘଟଣାବଳୀର ସମ୍ବନ୍ଧ ନିର୍ଣ୍ଣୟ କରିବା ପାଇଁ ତାଙ୍କ ଜୀବନର ଏଇ ଅଧ୍ୟାୟ ଦୁର୍ଭାଗ୍ୟବଶତଃ ଅନ୍ଧକାରାଚ୍ଛନ୍ନ । ପ୍ରୟାଗ, ଅଯୋଧ୍ୟା, ଚିତ୍ରକୂଟ ଓ କାଶୀଧାମରେ ସେ ଅଧିକାଂଶ ସମୟ ଅତିବାହିତ କରିଥିଲେ । ତାଙ୍କରି ଲେଖାରେ ଉଲ୍ଲେଖ ରହିଛି ଯେ ସେ ବହୁ ସ୍ଥାନ ବୁଲିଥିଲେ ।

ଗୃହସ୍ଥ ଜୀବନକୁ ସଂପୂର୍ଣ୍ଣ ପରିତ୍ୟାଗ କରିବାକୁ ଥରେ ସେ ମନସ୍ଥ କରି ସାରିବା ପରେ, ପ୍ରାଣର ସାନ୍ତ୍ୱନା ପାଇବା ଲାଗି ସ୍ୱଭାବତଃ ତାଙ୍କ ମତିଗତି ଅଯୋଧ୍ୟା ଆଡ଼କୁ ଚାଲିଯାଇଥିଲା । ସେଠାରେ ବହୁ ସାଂସ୍କୃତିକ ଓ ଆଧ୍ୟାତ୍ମିକ ଅନୁଷ୍ଠାନ ଥିବା ଯୋଗୁଁ, ସେହି ସ୍ଥାନଟି ତାଙ୍କ ହୃଦୟ-ମନ୍ଦିର ଭିତରେ ଅତି ଆଦର ଯତ୍ନ ସହ ସ୍ଥାନ ପାଇପାରିଥିଲା । ଅଯୋଧ୍ୟାନଗରୀ ରାମଙ୍କର ନିଜର ହୋଇଥିବା ହେତୁ ତାହା ଅଧିକ ପରିମାଣରେ ତାଙ୍କର ଆଧ୍ୟାତ୍ମିକ

ବାସଗୃହ ହୋଇଥିଲା । ଗୋଟିଏ ଦାରିଦ୍ର୍ୟପୀଡ଼ିତ ହତଭାଗା ଶିଶୁ ପରି ସେ ଏଠି ଆଶ୍ରୟ ପାଇଲେ; କିନ୍ତୁ ଦେଶର ପ୍ରଧାନ ତୀର୍ଥ-କ୍ଷେତ୍ର; ଯଥା—ଶ୍ରୀକ୍ଷେତ୍ର ପୁରୀ, ରାମେଶ୍ୱର, ଦ୍ୱାରକା, ବଦ୍ରିକାଶ୍ରମ ଏବଂ ହିମାଳୟର ଉଚ୍ଚତମ ପ୍ରଦେଶ ସବୁ ଭ୍ରମଣ କରିବା ପାଇଁ ତାଙ୍କ ମନ ଭିତରେ ସେତେବେଳେ ଗୋଟିଏ ଉଚ୍ଚତମ ଧାରଣା ରହିଥିଲା ପରି ସତେ ଯେପରି ବୋଧ ହେଉଥିଲା । ତାଙ୍କ ଦେଶ ଭ୍ରମଣ ସମ୍ପର୍କରେ କିମ୍ବଦନ୍ତୀ ଏବଂ 'ମୂଳ ଗୋସାଇଁ ଚରିତ'ରୁ ଯେଉଁ ବିବରଣୀ ମିଳେ, ସେସବୁ ବ୍ୟତୀତ ଆମେ କବିଙ୍କ ନିଜ ଲେଖାରେ ଏହି ସ୍ଥାନଗୁଡ଼ିକର ଜୀବନ୍ତ ବର୍ଣ୍ଣନା ଦେଖିବାକୁ ପାଉ । 'ବିନୟ ପତ୍ରିକା'ର କେତେକ ହୃଦୟସ୍ପର୍ଶୀ ପଂକ୍ତିରେ ନରନାରାୟଣଙ୍କୁ ପ୍ରାର୍ଥନା କଲାବେଳେ, ବଦ୍ରିକାଶ୍ରମର ଅରଣ୍ୟାନୀ, ଗିରି ଶୃଙ୍ଗ ଏବଂ ରାସ୍ତାରେ ତୀର୍ଥଯାତ୍ରୀମାନଙ୍କର ଦୁଃଖ କଷ୍ଟ ଓ ସଙ୍କଟ ଏବଂ ଅସ୍ତ୍ର-ଶସ୍ତ୍ରଧାରୀ ଡକାୟତମାନଙ୍କର ହିଂସ୍ର ଆକ୍ରମଣକୁ କବି ମନେ ପକାଇଛନ୍ତି ଏବଂ ନିଜର ସ୍ୱଭାବସୁନ୍ଦର ଭାଷାରେ କହିଛନ୍ତି—"ହେ ପ୍ରଭୁ ! ଆଧ୍ୟାତ୍ମିକ ପଥର ଯେ ପଥିକ ତାର ଯାତ୍ରାପଥ ତ କମ୍ ବିପଦସଂକୁଳ ନୁହେ । ଯେଉଁ ତ୍ୟାଗ-ତିତିକ୍ଷାର ଯଷ୍ଟି ଉପରେ ଭରାଦେଇ ଚାଲିବାକୁ ହେବ ତୁଳସୀ ଦାସର ତ ତାହା ନାହିଁ, କିମ୍ବା ଧର୍ମର ସୁଦୃଢ଼ ଭିତ୍ତି ଯାହାକି ପଥିକର ଏକମାତ୍ର ସଂପଦ, ତାହା ବି ତାହାର ନାହିଁ ।"

'ରାମଚରିତମାନସ'ରେ ହିମାଳୟସ୍ଥ ମାନସସରୋବରର ବର୍ଣ୍ଣନା ସେଇପରି ଭାବରେ ପ୍ରାଣର ଆବେଗ ଓ ଉତ୍ତାପ ଯେମିତି ଜୀବନ୍ତ । ସେ ଯେ ମାନସରୋବର ହ୍ରଦର ସ୍ୱଚ୍ଛ ଜଳରାଶି ଏବଂ ମଣିମଣ୍ଡିତ ସୋପାନମାଳା ଓ ନୀଳାଭ ଗିରିଶୃଙ୍ଗ ସବୁ ବ୍ୟକ୍ତିଗତ-

ଭାବରେ ଦେଖିଥାନ୍ତି—ଏସବୁ ଧାରଣାତୀତ ନୁହେଁ । ସେ ଦୃଶ୍ୟ ତାଙ୍କ ହୃଦୟକୁ ନିଶ୍ଚିତ ରୂପେ ମୁଗ୍ଧ କରିପାରିଥିବ ଏବଂ ତାଙ୍କ ମହାକାବ୍ୟର ନାମକରଣ ପାଇଁ ତାଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଛି ।

ନିଃସନ୍ଦେହ ଭାବରେ କୁହାଯାଇ ପାରେ ଯେ, ଯୁବକ ସମୟରେ ତଥା ଜୀବନର ମଧ୍ୟମ ବୟସରେ ତୁଳସୀ ଦାସ ଅଯୋଧ୍ୟାକୁ କେନ୍ଦ୍ର ବାସସ୍ଥଳ କରି, ଉତ୍ତର-ଭାରତର ପ୍ରାୟ ଶ୍ରେଷ୍ଠ ବଡ଼ ସବୁ ସ୍ଥାନ ଅବିଶ୍ରାନ୍ତ ଭାବରେ ବୁଲିଥିଲେ । ଏଇ ସ୍ଥାନ ଭ୍ରମଣର ଉଲ୍ଲେଖ ତାଙ୍କ ନିଜ କାବ୍ୟରେ ଏବଂ ତାଙ୍କ ସମସାମୟିକ ଲେଖକମାନଙ୍କ ଲେଖାରେ ପ୍ରକାଶ ପାଇଛି । ରାମ-କାହାଣୀ ସହିତ ସଂଶ୍ଳିଷ୍ଟ ଥିବା ଉତ୍ତରପ୍ରଦେଶ ଓ ବିହାରର ସ୍ଥାନ ସମୂହ ତାଙ୍କ ପାଇଁ ସ୍ୱଭାବତଃ ବିଶେଷ ଆକର୍ଷଣ ଥିଲା । ଜାନୁୟାରି ମାସର ମକର ସଂକ୍ରାନ୍ତି ଦିନ ସେ ପ୍ରୟାଗରେ ରହନ୍ତି । ଏପ୍ରିଲ ମାସରେ ରାମଜନ୍ମ ପଡ଼େ, ସେତେବେଳେ ସେ ଅଯୋଧ୍ୟାରେ ରହନ୍ତି । ସେଠାରୁ ସେ କାଶୀକୁ ଯାଆନ୍ତି । ବର୍ଷାଋତୁ ପରେ ସେ ମିଥିଳାକୁ ଯାଆନ୍ତି; କାରଣ ପ୍ରତିବର୍ଷ ଏହି ସମୟରେ ତାଙ୍କର ପ୍ରଭୁ ରାମଙ୍କର ବିବାହ-ଉତ୍ସବ ଏଠାରେ ଅନୁଷ୍ଠିତ ହୁଏ ।

ବିଭିନ୍ନ ସ୍ଥାନରେ ବହୁ ଘଟଣାବଳୀର ଉପାଖ୍ୟାନ ତାଙ୍କ ସଂପର୍କରେ ରହିଛି । କେଉଁଠି ଗୋଟିଏ ସୁଯୋଗ୍ୟ ସରାଇ ଗୃହ ରକ୍ଷକ ପ୍ରତି କମ୍ବା ଆଉ କେଉଁଠି ଗୋଟିଏ ବିପଥଗାମୀ ପୂଜକ ପ୍ରତି ଅଥବା ସବୁଠି ସାଧାରଣ ଭକ୍ତମାନଙ୍କର ସେ ଉପକାର କରୁଥିଲେ ।

ତାଙ୍କର ଏଇ ଭ୍ରମଣ କାଳ ଭିତରେ ଲୋକଚରିତ୍ର ସମ୍ବନ୍ଧରେ ସେ ସ୍ୱଭାବତଃ ବହୁ ଜ୍ଞାନ ଆହରଣ କରିଥିବେ । ଯେଉଁ ଲୋକମାନଙ୍କୁ

ସେ ଭେଟୁଥିଲେ, ସେମାନଙ୍କର ଆଚାର-ବ୍ୟବହାର ସତର୍କଭାବରେ ମନୋନିବେଶପୂର୍ବକ ପର୍ଯ୍ୟବେକ୍ଷଣ କରୁଥିଲେ । ସୀତାମାରହି-(ପ୍ରୟାଗ ଓ କାଶୀ ମଝିରେ)ଠାରେ ବାଲ୍ମୀକ ଋଷିଙ୍କ ଆଶ୍ରମ ପାଖରେ ଗୋଟିଏ ବରଗଛକୁ ବର୍ଣ୍ଣନା କରି ସେ କହିଛନ୍ତି— "ଗୋଟିଏ ସାଧାରଣ ବରଗଛ ବି ଶିବଙ୍କ ଦ୍ୱାରା ଅଧ୍ୟୁଷିତ । କିନ୍ତୁ ଏ ସ୍ଥାନଟି ଦି'ପ୍ରକାରେ ପବିତ୍ର ଓ ଧନ୍ୟ, କାରଣ ମାଆ ସୀତା ଦେବୀ ବନବାସ ସମୟରେ ଏଇଠି ରହିଥିଲେ ଏବଂ ବାଲ୍ମୀକ ଋଷି ଏଠି ତାଙ୍କର ଆଶ୍ରମ କରିଥିଲେ । ଏଠି ଲୋକମାନଙ୍କର କଥା କେଡ଼େ କୋମଳ ଓ ମଧୁର ! ସେମାନେ କେଡ଼େ ଭଦ୍ର ଓ ଦୟାର୍ଦ୍ର !"

ଏହି ବର୍ଷମାନଙ୍କରେ ତୁଳସୀ ଦାସ କଣ ଖୋଜୁଥିଲେ ? ସେ ଖୋଜୁ ନ ଥିଲେ ଜଣେ ଶୁଦ୍ଧପୂତ ମଣିଷର ଜୀବନଯାପନ କରି ବଂଚି-ରହିବାକୁ; ସେ ଖୋଜ ହେଉଥିଲେ ତାଙ୍କ ଅନ୍ତଃସ୍ଥଳର ଗଭୀର ଆଧ୍ୟାତ୍ମିକ ପ୍ରଶ୍ନରାଜିର ସମାଧାନ । ସେ ସିନା ଘର ପ୍ରତି ମୁହଁ ଏଡ଼େଇ ଦେଇଥିଲେ, କିନ୍ତୁ ଜୀବନ ପ୍ରତି ମୁହଁ ଏଡ଼େଇ ଦେଇ ନ ଥିଲେ କିମ୍ବା ପର୍ଯ୍ୟଟନ ପ୍ରତି ବା ସାହିତ୍ୟିକ ସୃଷ୍ଟି ପ୍ରତି ବିମୁଖ ହୋଇ ନ ଥିଲେ । ତାଙ୍କର କେତେଗୁଡ଼ିଏ ସଂକ୍ଷିପ୍ତ କବିତାରେ ଏବଂ ରାମଙ୍କ ପ୍ରଶ୍ନ ଓ ବୈରାଗ୍ୟ ସନ୍ଦୀପନୀ ଭଳି ଶ୍ରେଷ୍ଠ ଶ୍ରେଷ୍ଠ କବିତା ଗ୍ରନ୍ଥମାନଙ୍କରେ ଲୌକିକ ଶୃଙ୍ଖଳା ପ୍ରତି ଅନୁରକ୍ତି ରହିଛି । ଜୀବନର ଏଇ ଅବସ୍ଥାରେ ସେଗୁଡ଼ିକ ଲେଖାଯାଇଥିଲା ।

ଅଯୋଧ୍ୟା ଓ କାଶୀ ଛଡ଼ା ଚିତ୍ରକୂଟ ଓ ପ୍ରୟାଗ ଏହି ସମୟରେ ତାଙ୍କର ପ୍ରଧାନ ଗନ୍ତବ୍ୟସ୍ଥଳ ଥିଲା ।

ପ୍ରୟାଗରେ ସେତେବେଳେ ଦୁଇଜଣ ଅତି ପ୍ରସିଦ୍ଧ ରାମାୟଣ ବ୍ୟାଖ୍ୟାକାର ବାସ କରୁଥିଲେ ଏବଂ ଲୋକମାନଙ୍କୁ ଶିକ୍ଷା ଦେଉଥିଲେ ।

କଥିତ ଅଛି, ଥରେ ତୁଳସୀ ଦାସ ମକର ମେଳା ଅନୁଷ୍ଠିତ ହେଉଥିବା ସମୟରେ ପ୍ରୟାଗ ଆସିଥିଲେ । ସେତେବେଳେ ସବୁ ଶ୍ରେଣୀର ସାଧୁ-ସନ୍ନ୍ୟାସୀ ଓ ଶୁଦ୍ଧପୂତ ଲୋକମାନେ ସେଠାରେ ରୁଣ୍ଡ ହୋଇଥିଲେ । 'ମାନସ'ରେ ପ୍ରୟାଗର ଚିତ୍ର ଅଙ୍କନ କରି ସେ ଦେଖାଇଛନ୍ତି ଯେ କିପରି ପ୍ରୟାଗ ଓ ସେଠାକାର ସାଧୁସନ୍ଥ-ସମାଜ ତାଙ୍କ ମନ ଭିତରେ ସତେ ଯେପରି ବସା ବାନ୍ଧି ରହିଯାଇଛନ୍ତି । ସ୍ଥାନଟିର ପ୍ରାକୃତିକ ମୋହିନୀଶକ୍ତି ସେ ଭୁଲିପାରି ନଥିଲେ । 'କବିତାବଳୀ'ରେ ସେ କହିଛନ୍ତି, "ଗଙ୍ଗା ଓ ଯମୁନାର ଶ୍ୱେତ-କୃଷ୍ଣ ଜଳରାଶିର ସଂଗମ ଦୃଶ୍ୟ ଦେଖି ଆନନ୍ଦର ଗୋଟିଏ ତରଙ୍ଗ ମୋ ହୃଦୟକୁ କି ଦ୍ରୁତବେଗରେ ପରିବ୍ୟାପ୍ତ କରିଦେଲା ! ମୋର ମନେହେଲା ଯେପରି କାମଧେନୁର ପାଳେ ମନୋହର ଧଳା ବାଛୁରୀ ଆନନ୍ଦରେ ଏଣେତେଣେ ଡେଇଁ କୁଦି ସବୁଜ ଘାସର ଶେଯ ଉପରେ ଚରୁଛନ୍ତି ।"

ତାଙ୍କ ଜୀବନରେ ଚିତ୍ରକୂଟର ଅନୁଭବ କେବଳ ଆବେଗମୟ ନୁହେଁ; ପ୍ରାୟ ସମ୍ପୂର୍ଣ୍ଣରୂପେ ରହସ୍ୟମୟ । ସେ ବିଶ୍ୱାସ କରୁଥିଲେ, ରାମପ୍ରେମର ପରିକର୍ଷଣ ପାଇଁ କୌଣସି ବ୍ୟକ୍ତି ଯଦି ଆଗ୍ରହୀ ହୁଏ, ତେବେ ତାପାଇଁ ଶ୍ରେଷ୍ଠ ପନ୍ଥା ହେଉଛି କେବଳ ଚିତ୍ରକୂଟରେ ଅବସ୍ଥାନ । "ସୀତାରାମଙ୍କ ଅନୁକମ୍ପାରେ ଟିକିଏ ପ୍ରଚେଷ୍ଟା ହିଁ ପରମ ସମ୍ପଦ ଆଣିପାରିବ ।" ସେ ନିଜେ ଏହା ପରୀକ୍ଷା କରିଛନ୍ତି । ସେ କହିଛନ୍ତି, "ଛଅ ମାସଯାଏ ସେଇ ନଦୀରେ (ସରଯୂ) ସ୍ନାନ କରି, ଫଳମୂଳ ଆହାର କରି ରାମନାମ ଜପ କରିବାଦ୍ୱାରା" ସେ ସବୁ ପ୍ରକାର ଯୋଗ୍ୟତା ଏବଂ ଶୁଭପ୍ରଦ କର୍ମର ଅଧିକାରୀ ହୋଇ ପାରିଛନ୍ତି । ମେଘାଚ୍ଛନ୍ନ ପର୍ବତମାଳା, ସମୁଜ୍ଜ୍ୱଳ ଶୈଳଶ୍ରେଣୀ ଏବଂ

ସ୍ୱଚ୍ଛ ଜଳରାଶି ଇତ୍ୟାଦି ଚିତ୍ରକୂଟର ନୈସର୍ଗିକ ସୌନ୍ଦର୍ଯ୍ୟରେ କବି ମୁଗ୍ଧ ହୋଇଯାଉଥିଲେ । ତାଙ୍କର ପ୍ରାୟ ସମସ୍ତ ଗ୍ରନ୍ଥ ଭିତରେ ସେ ଚିତ୍ରକୂଟରେ ସବୁବେଳେ ରହିବାକୁ ତୃଷ୍ଣା ପ୍ରକାଶ କରିଛନ୍ତି । "ମଣିଷ ଜୀବନର ସମସ୍ତ ପାପ, ଦୁଃଖ ଓ ଶୋକ ପଛରେ ଗୋଡ଼େଇ ଗୋଡ଼େଇ ତାକୁ ଦୂର କରିଦେବା ପାଇଁ ସେଠି ଗୋଟିଏ ଚିରନ୍ତନୀ ଶିକାରୀ ବନ୍ଧୁ ସବୁବେଳେ ଅପେକ୍ଷା କରି ରହିଛି ।",

ଚିତ୍ରକୂଟରେ ତୁଳସୀ ଦାସ କି ଉପାୟରେ ରାମଙ୍କୁ ମୁହାଁମୁହିଁ ଦେଖିପାରିଥିଲେ ସେଇ କୌତୁକାବହ ଗଳ୍ପ ପ୍ରକାଶ କରିବାରେ ପୌରାଣିକ କାହାଣୀ ଓ କିମ୍ବଦନ୍ତୀ ଏକମତ । କବିଙ୍କ ଜୀବନର ସମସ୍ତ ବିବରଣୀରେ ଏଇ ଗଳ୍ପଟି ବାରମ୍ବାର ସବୁ ସମୟରେ କୁହାଯାଇଥାଏ । କବିଙ୍କ ନିଜ ଲେଖାରେ ଏହାର ଯେଉଁ ଉଲ୍ଲେଖ ରହିଛି, ତାହା ଏତେ ରହସ୍ୟମୟ ଯେ ସେଇ ଗଳ୍ପର ସବିଶେଷ ପୁନରାବୃତ୍ତି ଏଠାରେ କରାଯାଇପାରେ ।

ପ୍ରତିଦିନ ରାମ-କାହାଣୀ ଆବୃତ୍ତି କରିବାର ଅଭ୍ୟାସ ତୁଳସୀ ଦାସଙ୍କର ରହିଥିଲା ଏବଂ ଏଇ ଆବୃତ୍ତିର ଭକ୍ତିପୂର୍ଣ୍ଣ ଜୀବନ୍ତ ସ୍ପର୍ଶରେ ବିରାଟ ଜନତାର ଚିତ୍ତ ଆକୃଷ୍ଟ ହେଉଥିଲା । ରାମ-କୀର୍ତ୍ତିଗାଥା ଶୁଣିବା ପାଇଁ ହନୁମାନ ସବୁଦିନ ଉତ୍କଣ୍ଠିତ ହୋଇ ଗୋଟିଏ କୁଷ୍ଠରୋଗୀ ବେଶରେ ସେଠାରେ ଯୋଗ ଦେଉଥିଲେ; କିନ୍ତୁ ନିଜର ପରିଚୟ ଲୁଚାଇବାରେ ବଡ଼ ତତ୍ପର ଥିଲେ । ଏଇ ବୈଠକରେ ସମସ୍ତଙ୍କ ଆଗରୁ ସେ ଆସି ପହଂଚୁଥିଲେ ଏବଂ ସମସ୍ତଙ୍କ ଶେଷରେ ବୈଠକ ଛାଡ଼ି ଯାଉଥିଲେ ।

ତୁଳସୀ ଦାସ ଏଇ ଗୁପ୍ତ କଥାକୁ କପରି ଜାଣିପାରିଲେ । ତା' ଆରଦିନ ରାମ-କାହାଣୀ ବୋଲାସାରିବା ପରେ ବୈଠକ ଛାଡ଼ି ସେ

ସୁଆଡ଼େ ଚାଲିଗଲେ; କିନ୍ତୁ ତୁଳସୀ ଦାସ ହନୁମାନଦେବଙ୍କର ପାଦ ଧରି ସେ କିପରି ରାମଙ୍କୁ ପ୍ରତ୍ୟକ୍ଷଭାବରେ ଦେଖିବା ପାଇଁ ଗଭୀର ଭାବରେ ଲାଳାୟିତ, ପ୍ରକାଶ କଲେ । ହନୁମାନ ଏଭଳି ଜଣେ ଏକନିଷ୍ଠ ଭକ୍ତର ପ୍ରାର୍ଥନାକୁ ଏଡ଼ାଇଦେଇ ପାରି ନ ଥିଲେ ଏବଂ ଚିତ୍ରକୂଟରେ ଅପେକ୍ଷା କରି ରହିବସିବାକୁ ସେ କବିଙ୍କୁ ନିର୍ଦ୍ଦେଶ ଦେଲେ । ଦିନେ ତୁଳସୀ ଦାସ ଧ୍ୟାନମଗ୍ନ ହୋଇ ଚିତ୍ରକୂଟରେ ବସିଥାନ୍ତି, ଠିକ୍ ସେତିକି ବେଳେ ଦୁଇଟି ରାଜକୁମାର ସେଇ ବାଟେ ଗଲେ । କବିଙ୍କର ଦୃଷ୍ଟି ସେଇ ମୁହୂର୍ତ୍ତରେ ତଳକୁ ରହିଥିବାରୁ ସେହି ଦୃଶ୍ୟ ଦେଖିପାରିଲେ ନାହିଁ । ହନୁମାନଦେବ ପରେ ମୁହୂର୍ତ୍ତରେ ସେଇଠି ଉଭା ହୋଇ ପଚାରିଲେ, "ଘୋଡ଼ା ଉପରେ ବସି ଯାଉଥିବା ଦୁଇଜଣ ରାଜକୁମାରଙ୍କୁ ତୁମେ ଦେଖିଲ ? ସେମାନେ ହେଉଚନ୍ତି ରାମ ଲକ୍ଷ୍ମଣ ।" ଏ ଘଟଣାରେ କବି ଦାରୁଣ ଭାବରେ ନୈରାଶ୍ୟ-ଜର୍ଜରିତ ହୋଇପଡ଼ିଲେ ।

ଏ କାହାଣୀ ଏତିକିରେ ସରି ନ ଥିଲା । ଦୟାଳୁ ଦେବତା ହନୁମାନ ପୁଣି ନିର୍ଭରଯୋଗ୍ୟ ଭାବରେ ବିଷାଦଗ୍ରସ୍ତ କବିଙ୍କୁ ପ୍ରତିଶ୍ରୁତି ଦେଲେ ଯେ, ଆସନ୍ତା କାଲି ଅନ୍ୟ ଗୋଟିଏ ରୂପରେ ସେ ଶ୍ରୀରାମଙ୍କୁ ଦେଖାଇଦେବେ । ତା' ଆରଦିନ କବି ନଦୀକୂଳରେ ଗଭୀର ମନଦୁଃଖରେ ବସିଥାନ୍ତି, ଶ୍ରୀରାମ ସେଠି ଜଣେ ଯୁବକ ରୂପରେ ଦେଖାଦେଲେ ଏବଂ ତାଙ୍କ କପାଳରେ ଚନ୍ଦନ ଲଗାଇଦେବାକୁ ଅନୁରୋଧ କଲେ । ଏତିକିବେଳେ ହନୁମାନଜୀ ପାଖରେ ଥାଇ, ବେଳକାଳ ଜାଣି, କବିଙ୍କି ଟିକିଏ ଆଖିମାରିଦେଲେ ଏବଂ କବି ତାଙ୍କର ସ୍ୱାମୀ ଓ ପ୍ରଭୁଙ୍କର ପୂର୍ଣ୍ଣରୂପ ଦେଖିପାରିଲେ । ଏଇ ରୂପ ଦର୍ଶନରେ ସେ ଏତେ ବିମୁଗ୍ଧ ହୋଇଯାଇଥିଲେ ଯେ, ପ୍ରଭୁ ଶ୍ରୀରାମଙ୍କ କପାଳରେ

ଚନ୍ଦନ ଲଗାଇବା କଥା ଏକବାରେ ଭୁଲିଯାଇଥିଲେ ଏବଂ ଭଗବାନ (ଶ୍ରୀରାମ) ନିଜେ ହିଁ ତାହା କରିଥିଲେ ।

ଏହି ଗଳ୍ପର ବିବରଣୀକୁ ଆମେ ଆକ୍ଷରିକ ଭାବରେ ଗ୍ରହଣ କରିପାରୁ ବା ନକରିପାରୁ; କିନ୍ତୁ ଜଣାପଡ଼ୁଛି ଯେ ଏ ଘଟଣାରେ କବି ଗଭୀରଭାବରେ ଉଦ୍‌ବେଳିତ ହୋଇପଡ଼ିଥିଲେ । 'ଗୀତାବଳୀ' କବିତା ପୁସ୍ତକର ଗୋଟିଏ କବିତାରେ କବି ନିର୍ଦ୍ଦିଷ୍ଟ ଭାବରେ ଏହି ଘଟଣାକୁ ସ୍ମରଣ କରି ଦୁଃଖରେ କହିଛନ୍ତି ଯେ ତାଙ୍କର ଆଖି କିମିତି ତାଙ୍କ ନିଜର ଶତ୍ରୁ ହୋଇଛି । ଆଖି ଭୂମି ଉପରେ ନିବଦ୍ଧ ଥିବାରୁ ସେ କିପରି ଜୀବନର ସର୍ବୋତ୍କୃଷ୍ଟ ଦୃଶ୍ୟ ଦେଖିପାରିନାହାନ୍ତି, କିପରି ଈଶ୍ୱରଙ୍କ ରହସ୍ୟମୟ ଉପସ୍ଥିତି ସମ୍ବନ୍ଧରେ ସେ କେତେ ସାମାନ୍ୟ ଜାଣନ୍ତି । ଆଖିର ପଲକରେ ସବୁ କିମିତି ଘଟିଯାଉଛି ଏବଂ ସେ ଯଦିଓ ଜାଗ୍ରତ ତଥାପି ନିଦ୍ରିତ !!!" ତାଙ୍କ ଜୀବନର ଏହି ଅବସ୍ଥାରେ ପ୍ରଧାନ ବିଷୟ ହେଉଛି ଯେ ଗଭୀର ହୃଦୟ-ସମୀକ୍ଷାରେ ଏବଂ ଆଧ୍ୟାତ୍ମିକ ଆତ୍ମଜ୍ଞାନଲଭର ଯେ ସମସ୍ୟା ସମାଧାନ, ତାହାର ପରୀକ୍ଷାରେ ସେ ନିଜକୁ ନିୟୋଜିତ କରିଥିଲେ । ଚିତ୍ରକୂଟରେ ସେ ତାର ସମସ୍ତ ଉତ୍ତର ପାଇପାରିଥିଲେ ।

'ବିନୟ-ପତ୍ରିକା'ର ଗୋଟିଏ କବିତା ପ୍ରକାଶ କରେ ଯେ ସେ ଗୋଟିଏ ଘଟଣାକୁ କିପରି ଭାବରେ ଦେଖିଛନ୍ତି ଏବଂ ତଦ୍ୱାରା ଆମେ ଧାରଣା ପାଉ ତାଙ୍କ ଜୀବନର ସ୍ୱାମୀ ଏବଂ ପ୍ରଭୁଙ୍କ ସହିତ ଯେ ବନ୍ଧନ ତାକୁ ସେ କିପରି ଭାବରେ ନିଜେ ସମୀକ୍ଷା କରିଛନ୍ତି । ସେ ନିଜକୁ କହୁଛନ୍ତି, "ମୋର ଯାହା କହିବାର ଅଛି ତାକୁ ମନ ଦେଇ ଧ୍ୟାନ କର; ତୋର ଦୁଇଟି ଆଖିରେ ଚାହାଁ (ଯେଉଁ ଆଖି ଦୁଇଟି ବାହାର ଜଗତକୁ ଚାହେଁ ଏବଂ ଯେଉଁ ଆଖି ଅନ୍ତର-ଜଗତକୁ ଚାହେଁ)

ଏବଂ କହ ତିନି ଯୁଗରେ ଏଇ ତିନି ଜଗତରେ କେହି ଜଣେ ଅଛି, ଯିଏ କି ତୋର ପ୍ରଭୁଙ୍କ ପରି ତୋର ମଙ୍ଗଳ ପ୍ରତି ଏତେ ଆଗ୍ରହ-ଶୀଳ ? ତୁ ରକ୍ତ ମାଂସ ଶରୀରରେ ବସା ବାନ୍ଧି, ବହୁ ବନ୍ଧୁ ସମ୍ବନ୍ଧ ସୃଷ୍ଟି କରିଚୁ । ପରୀକ୍ଷା କଲେ ଦେଖିବୁ ବନ୍ଧୁ-ସ୍ନେହର ଏ ଯେଉଁ କପଟତାପୂର୍ଣ୍ଣ ବ୍ୟବସାୟ ତାର ପଛପଟରେ ପ୍ରତାରଣା ଧରାପଡ଼-ଯାଉଚି । ତୋର ବହୁ ବନ୍ଧୁଙ୍କର ଯେଉଁସବୁ ବ୍ୟବହାର ତାହା ଜଣେ ଠକର କାରବାରଠୁ ଉତ୍କୃଷ୍ଟତର ନୁହେଁ । ଏପରିକି ଯେଉଁସବୁ ଚତୁର ଦିଅଁ ଦେବତା ସେମାନେ ପ୍ରକୃତରେ ଯାହା, ତାଙ୍କୁ ସେଇ ଦୃଷ୍ଟିରେ ଦେଖିବା ଉଚିତ । ସେମାନେ ଯେବେ ତୋର ଟିକିଏ ଉପକାର କରନ୍ତି, ସେମାନେ ତୋହଠାରୁ ଲକ୍ଷେ ଗୁଣରେ ତାର ପ୍ରତିଦାନ ଆଶା କରିବେ । ତେଣୁ ଏ ଯେଉଁ ଦାନଧର୍ମର କାମ ଏବଂ ଧାର୍ମିକ ଯୋଗ୍ୟତା ତାହା ସବୁ ଏକବାରେ ନିଷ୍ଫଳ । ରାମପ୍ରେମରେ ଉଦ୍‌ବୁଦ୍ଧ ନ ହେଲେ ସେସବୁ କେବଳ ଶରୀରର କ୍ଲାନ୍ତି ଓ ଅବସନ୍ନତା ଛଡ଼ା ଆଉ କିଛି ନୁହେ । ରାମପ୍ରେମ ନ ଥିଲେ, ଏସବୁ ପାଉଁଶଗଦା ଉପରେ ଆହୁତି ଢାଳିବା ଏବଂ ମରୁଭୂମି ଉପରେ ବର୍ଷା କରିବା ସହିତ ସମାନ । ପ୍ରକୃତ ସତ୍ୟ ହେଉଚି ରାମଙ୍କ ପରି ସଂପୂର୍ଣ୍ଣ ଦୟାମୟ ପ୍ରଭୁ କେହି ନାହାନ୍ତି । ଆଦି, ମଧ୍ୟ, ଶେଷ—ସବୁ ସମୟରେ କେହି-ହେଲେ ସମସ୍ତଙ୍କର ମଙ୍ଗଳ କରିବାକୁ ପ୍ରସ୍ତୁତ ରହିବେ ନାହିଁ । କେବଳ ସେହି ପ୍ରଭୁଙ୍କ ଛଡ଼ା, ଯାହାଙ୍କର କୀର୍ତ୍ତିଗାଥା ସମଗ୍ର ଜଗତ୍ ଏବଂ ବେଦରେ ପରିବ୍ୟାପ୍ତ, ସେଇ ଜଣେ ଯିଏ ଏତେ ପ୍ରିୟତମ, ଯିଏ ତୋର ଜୀବନର ଜୀବନ, ଯିଏ ସର୍ବଶ୍ରେଷ୍ଠ ଉପକାରୀ, ଯିଏ ଧନ-ନିଃସ୍ୱ ଅତି ଦୁର୍ବୃତ୍ତଙ୍କୁ ଶୁଦ୍ଧ ପୂତ କରେ, ତାକୁ ତୁ ଯେବେ ଭୁଲି-ଯାଉ ରେ ଦୁର୍ଭଗା ! ତୁ ବିଶ୍ରାମ ବା ଶାନ୍ତି ପାଇବୁ କାହୁଁ ? ତୁଳସୀ !

ତୁ ମନେପକା—କୋଶଳର କୃପାମୟ ରାଜା ରାମ ତୋ ପାଇଁ କଣ କରିଚନ୍ତି ଏବଂ ଚିତ୍ରକୂଟରେ ଯେଉଁ ଘଟଣାବଳୀ, ତାକୁ ହୃଦୟ ଭିତରେ ସ୍ମରଣ କର ।”

ଅନ୍ୟାନ୍ୟ କବିତାମାନଙ୍କ ସହିତ ଉଦ୍ଧୃତ ହୋଇଥିବା ଏଇ କବିତାଟି ପଢ଼ିଲାବେଳେ ‘ଚିତ୍ରକୂଟ ଘଟଣା’ ଅନ୍ତିରିକ୍ତ ଅର୍ଥବୋଧ ଅର୍ଜନ କରିଚି । ମନେହୁଏ, ତାଙ୍କର ଶୁଦ୍ଧପୂତ ଜୀବନ, ଧର୍ମକାର୍ଯ୍ୟ ଓ ରାମଙ୍କ ପ୍ରତି ତାଙ୍କର ସ୍ୱେଚ୍ଛାକୃତ ଆତ୍ମସମର୍ପଣ ସତ୍ତ୍ୱେ ଏବଂ ବନ-ପର୍ବତରେ ତାଙ୍କର ଅବିଶ୍ରାନ୍ତ ପର୍ଯ୍ୟଟନ ସତ୍ତ୍ୱେ ସେ ଓ ତାଙ୍କ ପ୍ରଭୁଙ୍କ ମଧ୍ୟରେ କାହିଁକି ଗୋଟାଏ ଦୂରତ୍ୱ ରହିଚି—ଏ କଥା ସେ ସେଥିରେ ନିଜକୁ ପଚାରିଚନ୍ତି । ସାଧୁ ସନ୍ଥ, ଦାର୍ଶନିକ ଓ ପଣ୍ଡିତମାନେ ଏହାର କାରଣ ସଦୃଶ ଯେଉଁ ନିର୍ଦ୍ଦେଶ ଓ ଅର୍ଥ ପ୍ରକାଶ କରିଚନ୍ତି, ତାହା ସବୁ କବିଙ୍କୁ ସନ୍ତୁଷ୍ଟ କରି ପାରିନି । ପରିଶେଷରେ ସେ ନିଜ ଭିତରେ ଅନୁସନ୍ଧାନର ଆଲୋକ ଜାଳି ଆବିଷ୍କାର କରିପାରିଚନ୍ତି ଯେ, ଯେଉଁ ତସ୍କର ତାଙ୍କର ସମ୍ପଦ ସବୁ ଚୋରି କରି ନେଇଯାଇଚି, ସେ ତାଙ୍କର ଭିତରେ ଅଛି । କେବଳ ଚିତ୍ରକୂଟରେ ସେ ସେଇ ତସ୍କରଟିକୁ ଲକ୍ଷ୍ୟ କରିବାକୁ ସମର୍ଥ ହୋଇଥିଲେ ।

ଐଶୀଶକ୍ତିର ଇଚ୍ଛା ଏବଂ ଉଦ୍ଦେଶ୍ୟ ଏବଂ ସେଇ ଶକ୍ତିର ଦୟା-ଲାଭ ପାଇଁ ଯେଉଁ ପଥ ରହିଛି—ସେସବୁର ନୂତନ ଜ୍ଞାନ ସ୍ପଷ୍ଟତଃ ତାଙ୍କ ଅନ୍ତର ଭିତରେ ପ୍ରତିଭାତ ହୋଇଥିଲା । ସର୍ବତ୍ର ପରିବ୍ୟାପ୍ତ ବ୍ରହ୍ମ ସ୍ୱରୂପ ସେଇ ରାମ, ଯିଏ ସମସ୍ତ ଜଗତର ଶକ୍ତି, ତାଙ୍କ ସମ୍ବନ୍ଧରେ କ୍ଷୀଣ ଆଭାସ ସେ ଚିତ୍ରକୂଟରେ ପାଇଥିଲେ । ତାହା ତାଙ୍କୁ ଆତ୍ମବିଶ୍ୱାସ ଦେଇଥିଲା ।

ଦୀର୍ଘ ଅନ୍ୱେଷଣ-ପଥର ଶେଷ ଭାଗରେ ସୁନିଶ୍ଚିତ ଭାବରେ

ସେ ଦେଖିପାରିଥିଲେ ଏବଂ ଯେଉଁ ବିଶ୍ୱାସ ସେ ତାହାଁରୁ ଆହରଣ କରିଥିଲେ, ତାକୁ ଅମର କରିଥିବା ମହାକାବ୍ୟ ରାମଚରିତ ମାନସରେ ତାକୁ ଲିପିବଦ୍ଧ କରିବାକୁ ପ୍ରସ୍ତୁତ ହୋଇଗଲେ ।

# 5 ତୁଳସୀ ଦାସଙ୍କ ଶ୍ରେଷ୍ଠ କୃତି

ପୁଣ୍ୟତୋୟା ସରଯୂ ନଦୀ କୂଳସ୍ଥ ଅଯୋଧ୍ୟା ନଗରୀରେ ଅବସ୍ଥାନ କରି 1631 ସମ୍ବତ୍ ଚୈତ୍ର ମାସ ନବମୀ ମଙ୍ଗଳବାର ଦିନ ତୁଳସୀ ଦାସ 'ରାମଚରିତ ମାନସ'ର ଲେଖା ଆରମ୍ଭ କଲେ । ଅଯୋଧ୍ୟା ଶ୍ରୀରାମଙ୍କର ଜନ୍ମସ୍ଥାନ ଏବଂ ସେହି ଦିନ ଶ୍ରୀରାମଙ୍କର ଜନ୍ମଦିନ ହୋଇଥିବାରୁ ସେଇ ସ୍ଥାନ ଓ ଦିନ ଉଭୟ ପ୍ରାଧାନ୍ୟପୂର୍ଣ୍ଣ । ପୁଣି ଠିକ୍ ସମଭାବରେ ସେଇ ଦିନର ପ୍ରାଧାନ୍ୟ ରହିଛି, ଯେହେତୁ ଏହା କବିଙ୍କ ଜୀବନ ସହିତ ସଂପୃକ୍ତ ଏବଂ କବି ଅତି ଯତ୍ନର ସହିତ ଏହି ଦିନଟିକୁ ତାଙ୍କ କାବ୍ୟରେ ଉଲ୍ଲେଖ କରିଥିବାରୁ ଏହା ମତଦ୍ଵୈଧର ବହୁ ଦୂରରେ । ଏହି ଦିନଟି ଖ୍ରୀଷ୍ଟାବ୍ଦ ଅନୁସାରେ 1574 ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ଶେଷ ତାରିଖ ହେବ । ଯେକୌଣସି ପ୍ରକାର ଗଣନାରୁ କୁହାଯାଇ ପାରିବ ଯେ, କବି ଜୀବନର ମଧ୍ୟମ ବୟସରେ ପହଞ୍ଚି-ଥିବେ ଏବଂ ଜୀବନର ଗୋଟିଏ ନିର୍ଦ୍ଦିଷ୍ଟ ଅବସ୍ଥା ପାରହୋଇ ସାରିଥିବେ । ଯୁବକ ଅବସ୍ଥାରେ ସୂକରଖେତଠାରେ ରାମକାହାଣୀ ଶୁଣିବା ଦିନଠାରୁ ଅଯୋଧ୍ୟାରେ ରାମକାହାଣୀ ଲେଖିବା ସମୟ ଭିତରେ ସେ କେଉଁ ବ୍ୟକ୍ତିମାନଙ୍କଦ୍ୱାରା ଏବଂ କି ଭାବଧାରାଦ୍ୱାରା ପ୍ରଭାବିତ ହୋଇଥିଲେ, ଏ ସବୁ ସମ୍ବନ୍ଧରେ ସେ କିଛି କହିନାହାନ୍ତି ବୋଲି ଆମ୍ଭେମାନେ ଦୁଃଖ ପ୍ରକାଶ କରୁ । ଜ୍ଞାନ ଆହରଣ ପାଇଁ ତାଙ୍କର ପ୍ରବଳ ପିପାସା ଥିଲା । ତେଣୁ ଶେଷରେ କାଶୀରେ ତାଙ୍କର ଶିକ୍ଷକ ମହାତ୍ମା ଶେଷ-ସନାତନଙ୍କଠାରୁ ଶଙ୍କରଙ୍କ ଅଦ୍ୱୈତବାଦ ଦର୍ଶନ ଯେ ସେ କେବଳ ଶିକ୍ଷା କରିଥିଲେ, ତା' ନୁହେଁ; ସେ

ଜ୍ଞାନର ବହୁ ପ୍ରଭାବ ପ୍ରତି ନିଜକୁ ଉନ୍ମୁକ୍ତ ରଖିଥିଲେ । ତାଙ୍କ ମନ ଭିତରେ ରହିଥିବା ଅଦ୍ୱୈତବାଦର ବହୁ ରୂପ 'ବୈରାଗ୍ୟ ସନ୍ଦୀପନୀ' ଏବଂ 'ମାନସ'ରେ ନିର୍ଭୁଲରୂପେ ଦେଖିବାକୁ ମିଳେ । ଶେଷ-ସନାତନଙ୍କର ଶିଷ୍ୟମାନଙ୍କ ମଧ୍ୟରୁ ଅନେକ ନିଶ୍ଚୟ କୃଷ୍ଣଭକ୍ତ ଥିଲେ । ଲୋକମୁଖରୁ ଜଣାଯାଏ, ନନ୍ଦ ଦାସ ନାମକ କବିଙ୍କର ଜଣେ ସହପାଠୀ ଥିଲେ । ସେ ଜଣେ ସୁପରିଚିତ କବି ଏବଂ କୃଷ୍ଣ-ଭକ୍ତ । କୃଷ୍ଣଭକ୍ତ ମତବାଦ ସମ୍ପର୍କରେ ବହୁତ କଥାରେ କବି ତାଙ୍କ ସହିତ ତର୍କ କରିଥିବେ ନିଶ୍ଚୟ । କିନ୍ତୁ ଶୈବଧର୍ମର ମତବାଦରେ ସେ ବିଶେଷରୂପେ ଅନୁପ୍ରାଣିତ ନ ହୋଇ ରହିପାରି ନ ଥିଲେ । ଜୀବନର ଶେଷ ପର୍ଯ୍ୟନ୍ତ ସେ ଯେ ପରମ ଶିବଭକ୍ତ ଥିଲେ—ଏହାର ଯଥେଷ୍ଟ ପ୍ରମାଣ ମଧ୍ୟ ମିଳୁଛି । ମହାବୀର ତାଙ୍କ ନିଜର ଇଷ୍ଟ-ଦେବତା । ସେ କହିଚନ୍ତି, "ମହାବୀର ତାଙ୍କୁ ଶିଶୁ ଅବସ୍ଥାରୁ ନିଜର କରିନେଇଥିଲେ", ଲାଳନ ପାଳନ କରୁଥିଲେ ଏବଂ ତାଙ୍କ ବୈଚିତ୍ର୍ୟମୟ ଜୀବନର ନାନା ଭାଗ୍ୟବିପର୍ଯ୍ୟୟ ବେଳେ ସେ (ମହାବୀର) ତାଙ୍କୁ ବରାବର କରୁଣାଦୃଷ୍ଟିରେ ଦେଖୁଥିଲେ । ପ୍ରକୃତରେ ଯେତେବେଳେ କେହି ଶିଷ୍ୟ ବା କେହି ଗୁଣଗ୍ରାହୀ ବ୍ୟକ୍ତି ସନ୍ଥ-କବିଙ୍କ ପ୍ରତି କୃତଜ୍ଞତା ଦେଖାଇବା ପାଇଁ ଆସନ୍ତି, ତାଙ୍କୁ ଏହି ଗୋଟିଏ କଥା ସେ ପ୍ରସ୍ତାବ ଦିଅନ୍ତି ଯେ ସେମାନେ ମହାବୀରଙ୍କ ମୂର୍ତ୍ତି ଏବଂ ମହାବୀରଙ୍କ ପାଇଁ ଗୋଟିଏ ମନ୍ଦିର ପ୍ରତିଷ୍ଠା କରିଦେବେ । ଯେଉଁ ବିଭିନ୍ନ ପ୍ରକାର ବେଦ, ପୁରାଣ, ଉପନିଷଦ୍ ଏବଂ ଅନ୍ୟାନ୍ୟ ଅନେକ ମୌଳିକ ଉପାଦାନ ତାଙ୍କ ମହାକାବ୍ୟ ରଚନାରେ ସାହାଯ୍ୟ କରିଚନ୍ତି, 'ମାନସ'ର ପ୍ରାରମ୍ଭିକ କବିତାମାନଙ୍କରେ ସେଗୁଡ଼ିକର ଆବଶ୍ୟକତାକୁ କବି ବଡ଼ ସରଳ ଭାବରେ ସ୍ୱୀକାର

କରେଚନ୍ତି । ସେ ବହୁପ୍ରକାର ଜ୍ଞାନ ଓ ଅଭିଜ୍ଞତା ଲାଭ କରିଥିଲେ । ଏହାର ଭିତରେ ସେ ତାଙ୍କର ସ୍ୱପ୍ନ ଏବଂ ବିଶ୍ୱାସର ଐକ୍ୟକୁ ଉନ୍ନତ କରିଚାଲିଥିଲେ । ସମାଜରେ ଗୋଷ୍ଠୀଗତ ଧର୍ମସମ୍ପର୍କ ସେତେବେଳେ ଯୁଗର ମାଙ୍ଗ ଥିଲା । ସେହି ସମାଜରେ ସବୁ ଜୀବନ ଏକ—ଏଇ ଦୃଷ୍ଟିକୋଣର ସେ ସମର୍ଥକ ଥିଲେ । ଏଇ ହେଉଚି ପ୍ରକୃତରେ ଆଶ୍ଚର୍ଯ୍ୟଜନକ ବିଷୟ !

ତାଙ୍କ ବିଶ୍ୱାସର ଅନ୍ତଃସ୍ଥଳ ପ୍ରଥମତଃ ହେଉଛି ଯେ ରାମ ନାମରେ ଗୋଟିଏ ଶକ୍ତି ଅଛି ଏବଂ ଗୋଟିଏ ରୂପ ଅଛି । ଦ୍ୱିତୀୟରେ ସ୍ୱଭାବତଃ ପ୍ରେମ, ଦୟା ଓ କରୁଣାରେ ଏହା ପରିପୂର୍ଣ୍ଣ । ଶେଷରେ ପ୍ରେମ ପବିତ୍ରତା ଏବଂ ନିଃସ୍ୱାର୍ଥପରତାଦ୍ୱାରା ଏ ଶକ୍ତିର ସ୍ପର୍ଶରେ ଆସି-ପାରିବା ହିଁ ଜୀବନର ପରିପୂର୍ଣ୍ଣତା । ତାଙ୍କ ଅବବୋଧ ଅନୁସାରେ ତାଙ୍କର ବିଶ୍ୱାସ ଓ ସ୍ୱପ୍ନର ଉଦ୍‌ଘାଟନ ଏବଂ ପ୍ରକାଶ ପାଇଁ ରାମ-କାହାଣୀ ଆଦର୍ଶ ମାଧ୍ୟମ । ଆମର ବିଶ୍ୱାସଯୋଗ୍ୟ ହୋଇପାରେ ବା ନହୋଇପାରେ; କିନ୍ତୁ ମହାଦେବ ଦିନେ ସ୍ୱପ୍ନରେ ତାଙ୍କ ଆତ୍ମାର ଏବଂ ଜନଜୀବନର ମଙ୍ଗଳ ପାଇଁ ରାମ-କାହାଣୀ ଲେଖିବାକୁ ତାଙ୍କୁ କହିଲେ । ଐଶ୍ୱରିକ ଅନୁପ୍ରେରଣାରେ ସେ ଯେ 'ରାମଚରିତ ମାନସ' ଲେଖିଥିଲେ ଏ କଥା ସେ ନିଜେ ଭକ୍ତିର ସହ ବିଶ୍ୱାସ କରୁଥିଲେ ।

ଗୋଟିଏ ଦୀର୍ଘ ଉଜ୍ଜ୍ୱଳ ଭୂମିକା ଭିତରେ ତୁଳସୀ ଦାସ ରାମ-କାହାଣୀ ଆରମ୍ଭ କରିଚନ୍ତି । ଏହାର ମୌଳିକ ଉଦ୍ଦେଶ୍ୟ "ମୋର ଆତ୍ମାର ଶାନ୍ତି ସମ୍ପାଦନ" ବୋଲି ସେ କହିଛନ୍ତି । ଏହାକୁ ଆହୁରି ସୁଦୃଢ଼ କରିବା ପାଇଁ ସେ ତାଙ୍କ ପୁସ୍ତକର ଶେଷ କବିତାରେ ପୁଣି ବ୍ୟକ୍ତ କରିଚନ୍ତି "ମୋର ହୃଦୟର ଅନ୍ଧକାର ଦୂର କରିବା ପାଇଁ ।" ସରଳ ଭାବରେ ଦେଖିବାକୁ ଗଲେ ତାଙ୍କର ଏକ ପ୍ରକାର ପ୍ରବେଶ

ଜଣେ ଶିକ୍ଷକର ନୁହେ ବା ଜଣେ ପ୍ରଚାରକର ନୁହେଁ, ଏହା ହେଉଛି ଜଣେ ଅନୁସନ୍ଧିତ୍ସୁର; ଯିଏ ରାମଙ୍କ ପନ୍ଥା ଖୋଜି ଖୋଜି ଗଲାବେଳେ ଯେଉଁ ଆନନ୍ଦ ପାଇଛି, ତାହା ପାଠକମାନଙ୍କ ସହିତ ଉପଭୋଗ କରିବାରେ ଆଗ୍ରହୀ ହୋଇଉଠିଛି । ସେ ଅନୁମାନ କରନ୍ତି ଯେ ହୁଏତ ସିଏ ସମାଲୋଚନାର ପାତ୍ର ହେବେ । ଅତି ନମ୍ରତାର ସହିତ ସେ ହିଅଁ ଦେବତା, ମନୁଷ୍ୟ, ରାମକଥା ଲେଖିଥିବା ପୂର୍ବ ଲେଖକଗଣ, ସନ୍ଦେହୀ, ବହ୍ମୃ ପ୍ରକାଶ ଇତ୍ୟାଦି ସମସ୍ତଙ୍କ ଆଶୀର୍ବାଦ ଭିକ୍ଷା କରନ୍ତି । ସେ ଜାଣନ୍ତି, ସଂସ୍କୃତ ଭାଷାରେ ସେ ତାଙ୍କର ମହାକାବ୍ୟ ନ ଲେଖି ଜନସାଧାରଣଙ୍କ ଭାଷାରେ ଲେଖିଥିବାରୁ ପଣ୍ଡିତମାନେ ତାଙ୍କୁ ଉପହାସ କରିବେ । ନିଜେ ଯାହା ସ୍ଥିର କରନ୍ତି, ସେଥିରେ ସେ ଦୃଢ଼ ରହନ୍ତି । କାରଣ ନିଶ୍ଚିତଭାବରେ ସେ ମନ ଭିତରେ ଭାବନ୍ତି ଯେ ଉତ୍କୃଷ୍ଟ କବିତା "ଗଙ୍ଗା ପରି ସମସ୍ତଙ୍କର ମଙ୍ଗଳ କରିବା ଉଚିତ" ।

ମୁଖ୍ୟତଃ ତାଙ୍କର ଏଇ ପ୍ରକାର ପ୍ରବେଶ ତତ୍କାଳୀନ କବି ପଣ୍ଡିତଙ୍କଠାରୁ ଏତେ ଭିନ୍ନ ଏବଂ ଏକ ଜ୍ୱଳନ୍ତ ଅଭିଜ୍ଞତାର ଆଲୋକ ଓ ଉତ୍ତାପରେ ଏତେ ଜୀବନ୍ତ ଯେ ବ୍ୟବସାୟୀ ଧର୍ମ ତତ୍ତ୍ୱ ବ୍ୟାଖ୍ୟାକାର ଶ୍ରେଣୀୟ ବ୍ୟକ୍ତିମାନେ ଏଥିରେ ନିଶ୍ଚୟ ଭ୍ରୂକୁଞ୍ଚନ କରିଥିବେ । ଯେଉଁ ଅଧିବିଦ୍ୟା-ବିଶାରଦ ଦାର୍ଶନିକମାନେ ଐଶୀ-ଶକ୍ତିକୁ ଗୋଟାଏ ବ୍ୟକ୍ତିତ୍ୱବିହୀନ ସାମାନ୍ୟ କଳ୍ପନାର କଥା ବୋଲି କହି ଐଶୀଶକ୍ତିକୁ ନ୍ୟୂନ ଭାବରେ ଦେଖନ୍ତି, ସେମାନଙ୍କ ଆଖିରେ ତୁଳସୀ ଦାସ ଗୋଟିଏ ବିରାଟ ସନ୍ଦେହ । ଏଇସବୁ ପ୍ରଶ୍ନ ଓ ସନ୍ଦେହ ହୁଏତ ଉତ୍ଥାପିତ ହେବ ଜାଣି, ତାହା ସବୁ ଦୂର କରିବା ପାଇଁ ସେ ଭଲରୂପେ ଯତ୍ନ କରିଥିଲେ ।

ପ୍ରଥମ ପ୍ରଶ୍ନ ହେଉଛି ବେଦ ବର୍ଣ୍ଣିତ ଯୋଗୀଜନ ଧ୍ୟେୟ ବ୍ରହ୍ମ ଏବଂ ତାଙ୍କ ଗଳ୍ପର ରାମ କଣ ସମାନ ? ତୁଳସୀ ଦାସଙ୍କ ମତରେ ଉଭୟେ ସମାନ; କାରଣ ସସୀମ ଓ ଅସୀମ ମଧ୍ୟରେ କିଛି ପାର୍ଥକ୍ୟ ନାହିଁ । ଭକ୍ତର ପ୍ରେମ ପାଇଁ ଅସୀମ ଅଚିନ୍ତ୍ୟମୟ ଅନାଦି ନିରାକାର, ଶ୍ରୀରାମ ସସୀମ ପାଲଟିଯାଉଛନ୍ତି । ଏହା ଠିକ୍ ପାଣି ଓ ବରଫର ଦୁଇଟି ଭିନ୍ନ ଅବସ୍ଥା ସଦୃଶ ।

ଆତ୍ମଜ୍ଞାନ ଲାଭ କ୍ଷେତ୍ରରେ ରାମନାମର କ୍ଷମତା ଓ କର୍ତ୍ତବ୍ୟ ରହିଚି । ତାଙ୍କ ବିଶ୍ୱାସର ଅନ୍ୟ ଏଇ ଗୋଟିଏ ଧାରା ସମ୍ପର୍କରେ ଯେତେ ସନ୍ଦେହ, ତାକୁ ମଧ୍ୟ ସେ ମୋଚନ କରିଛନ୍ତି । ସେ କଣ କହୁଚନ୍ତି ଯେ ଜାଣେ ତାର ଆଗ୍ରହ ନେଇ ସେ ଦୃଢ଼ତାର ସହିତ କହୁଚନ୍ତି, "ଅନିର୍ବଚନୀୟ, ଅତଳସ୍ପର୍ଶୀ, ଅନାଦି ଏବଂ ଅତୁଳନୀୟ ବ୍ରହ୍ମଙ୍କର ସସୀମ ଏବଂ ଅସୀମ ଏଇପରି ଦୁଇଟି ଆକାର ଅଛି । ମୋ ମତରେ ନାମ (ରାମନାମ) ଏଇ ଉଭୟ ଅପେକ୍ଷା ଶ୍ରେଷ୍ଠତର । କାରଣ ଏଇ ନାମର କ୍ଷମତା ଭିତରେ ଏ ଦୁଇଟି ଆସିପାରେ" । ନିର୍ମଳ ନିଷ୍ଠାର ସହିତ ସେ ପୁଣି ବ୍ୟକ୍ତ କରିଚନ୍ତି "ମୋର ଏଇ ଦୃଢ଼ ମତବାଦକୁ ଗୋଟିଏ ବିଳାସ ଖିଆଲ ବୋଲି ଦୟାପୂର୍ବକ କେହି ମନେ କର ନାହିଁ । ମୁଁ ଯାହା କିଛି କହୁଚି ତାହା ସବୁ ମୋ ନିଜ ଅନୁଭୂତି, ପ୍ରେମ ଓ ବିଶ୍ୱାସରୁ ଜନ୍ମ । ଅସୀମ ଓ ସସୀମ ସଂପର୍କିତ ଜ୍ଞାନ ଠିକ୍ ଅଗ୍ନି ସଦୃଶ । ଅସୀମ ଅଗ୍ନି ପରି କାଠଖଣ୍ଡିକରେ ଲୁକ୍କାୟିତ; ସସୀମ ଉଜ୍ଜ୍ୱଳ ଅଗ୍ନିଶିଖା ପରି, ଯାହାକୁ ଆମେ ଦେଖି-ପାରୁ । ତେଣୁକରି ମୁଁ କହେ ନାମ (ରାମନାମ) ଏପରିକି ବ୍ରହ୍ମାଙ୍କ ଅପେକ୍ଷା ମଧ୍ୟ ଶ୍ରେଷ୍ଠତର ।" ଅରେ ଦୁଃଖର ସହିତ ଯୁକ୍ତ କରି ସେ କହିଚନ୍ତି "ଯାହାଙ୍କ ପାଇଁ ଏ ନାମ ବସିଚି ସେଇ ନାମ ଓ ସେ ଏକ;

କିନ୍ତୁ ସେମାନେ ପ୍ରଭୁ ଓ ସେବକ ଭାବରେ ସଂଯୁକ୍ତ"। "ନାମ ସଙ୍ଗେ ସଙ୍ଗେ ସେହି ରୂପକୁ ଆବାହନ କରେ" । "ଏହି ନାମ ସସୀମ ଓ ଅସୀମ ଉଭୟର ସାକ୍ଷୀ" । ଏହା "ଜଣେ କୁଶଳବାଦ୍ୟ ବ୍ୟାଖ୍ୟାକାର ପରି" ଯିଏ କି ଜଣକର ଗୋଟିଏ ବିଷୟକୁ ଅନ୍ୟ ଜଣକୁ ବ୍ୟାଖ୍ୟା କରି ବୁଝାଇଦିଏ । ଗଭୀର ଭକ୍ତିପୂର୍ଣ୍ଣ ଆବେଗ-ସହକାରେ ସେ ଏହି ନାମର ଶକ୍ତିକୁ ସୀମାଶୂନ୍ୟ ପ୍ରଶଂସା କରିଛନ୍ତି । "ଜୀବିତାବସ୍ଥାରେ ରାମ ଦଣ୍ଡକାରଣ୍ୟବାସୀ ଲୋକମାନଙ୍କର ମଙ୍ଗଳ କରିପାରିଥିଲେ; କିନ୍ତୁ ଅସଂଖ୍ୟ ଜନମଣ୍ଡଳୀର ହୃଦୟକୁ ଏହି ନାମ ପବିତ୍ର କରିଛି ଏବଂ ମୁକ୍ତି ଦେଇଛି" ।

କବି ପ୍ରଧାନ ଗଳ୍ପର ମୁଖବନ୍ଧ ଲେଖିବାରେ ଗୋଟିଏ ନୂତନ ପ୍ରଣାଳୀ ଅବଲମ୍ବନ କରିଛନ୍ତି । ତାହା ହେଉଛି ଶିବ-ପାର୍ବତୀଙ୍କ ମଧ୍ୟରେ ଏକ ଦାର୍ଶନିକ କଥୋପକଥନ । ତହିଁରେ ସର୍ବତ୍ର ପରିବ୍ୟାପ୍ତ ବ୍ରହ୍ମ ଏବଂ ତାଙ୍କ ଗଳ୍ପସ୍ଥ ରାମଙ୍କ ପ୍ରକୃତି ଓ ପରିଚୟ ରହିଛି । ତାଙ୍କର ସ୍ୱାଭାବିକ ବୁଝାଇବା ରୀତି ଅତୀବ ମାନବିକ ଗୁଣ-ସଂପନ୍ନ । ଏହା ତାଙ୍କ ରାମପ୍ରେମ ପ୍ରତି ବିଶ୍ୱାସର ପ୍ରକୃତ ସୀମାରେଖା କାହିଁକି ଏତେ ପରିବ୍ୟାପ୍ତ ତାହା ସୁସ୍ପଷ୍ଟ କରିଦେଇଛି ।

ତୁଳସୀ ଦାସଙ୍କ ରାମ ଭକ୍ତିର କଳ୍ପିତ ତାଙ୍କ ମହାକାବ୍ୟ ଭିତରେ ଏତେ ନିଭୃଲଭାବରେ ବର୍ଣ୍ଣିତ ଯେ ଏହାକୁ ଠିକ୍ ଭାବରେ ନ ବୁଝିପାରିଲେ ଏହାର ଅନେକ ଅର୍ଥ ହରାଇବାକୁ ପଡ଼ିବ । ଧାର୍ମିକ ପୁସ୍ତକମାନଙ୍କରେ ଥିବା ନବଧା ଭକ୍ତିର ବିବରଣୀ ଦେବାରେ ତୁଳସୀ ଦାସ ପରାଙ୍ମୁଖ ନୁହନ୍ତି । ସେ ନବଧା ଭକ୍ତିର ଗଣନା ରାମ ନିଜେ କରିଛନ୍ତି :

ପ୍ରଥମ—ସତ୍ସଙ୍ଗ

ଦ୍ୱିତୀୟ—ରାମକାର୍ତ୍ତି-କାହାଣୀରେ ଗଭୀର ମନୋନିବେଶ ।

ତୃତୀୟ—ଗୁରୁଙ୍କ ପ୍ରତି ଭକ୍ତିପୂର୍ଣ୍ଣ ସେବା ।

ଚତୁର୍ଥ—ନିଷ୍କପଟଭାବେ ମୋର କୀର୍ତ୍ତିଗାନ ।

ପଞ୍ଚମ—ମୋର ନାମ ଜପ ଏବଂ ମୋ ଉପରେ ବେଦ-ଆଦେଶ ତୁଲ୍ୟ ଗଭୀର ବିଶ୍ୱାସ ।

ଷଷ୍ଠ—ଆତ୍ମ-ସଂଯମ, ନୈତିକ ଶୌଚ, ଧର୍ମ କର୍ମର ଅବିଶ୍ରାନ୍ତ ସାଧନା ।

ସପ୍ତମ—ଚରିତ୍ରଶକ୍ତିସମ୍ଭୂତ ରାମଜ୍ଞାନ; ଯଦ୍ୱାରା ମୁଁ ଅନ୍ତର୍ନିହିତ ଶକ୍ତି ରୂପେ ପୃଥିବୀରେ ସର୍ବତ୍ର ବିଦ୍ୟମାନ; ସଜ୍ଜନଙ୍କ ପ୍ରତି ମୋ ନିଜଠାରୁ ବଳି ଅଧିକ ସମ୍ମାନ ।

ଅଷ୍ଟମ—ନିଜର ଯେତିକି ଅଛି, ତହିଁରେ ସନ୍ତୋଷ ଲାଭ; ସ୍ୱପ୍ନରେ ସୁଦ୍ଧା ଅନ୍ୟର ଦୋଷ-ଦୁର୍ବଳତା ପ୍ରତି ଦୃକ୍‌ପାତ୍ ପରିହାର ।

ନବମ—ସରଳ ଅକପଟ ବ୍ୟବହାର, ମୋ ଉପରେ ଦୃଢ଼ କ ବିଶ୍ୱାସ, ଉଲ୍ଲାସ ଓ ଅବସାଦମୁକ୍ତ ମନ ।

ଭଗବାନଙ୍କ ଭିତରେ ବାସ କରୁଥିବା ଏଇପରି ଭକ୍ତର ପ୍ରତିଚ୍ଛବି 'ମାନସ'ର ପ୍ରଧାନତମ ପ୍ରସଙ୍ଗ ଭିତରେ ବାରମ୍ବାର ସଂଘଟିତ ହୋଇପାରିଛି । ଯେଉଁ ଭକ୍ତର ମନ ଭୟ, ଉତ୍କଣ୍ଠା, ବାସନା ଓ ଅହଂକାରରୁ ମୁକ୍ତ ଏବଂ ନିନ୍ଦା ବା ପ୍ରଶଂସାଦ୍ୱାରା ଆଘାତପ୍ରାପ୍ତ ନୁହେ; ଯାହାର ହୃଦୟ ଶାନ୍ତ, ସ୍ଥିର ଏବଂ ସମସ୍ତଙ୍କ ଲାଗି ସଦିଚ୍ଛାମୟ ଓ କାହା ପ୍ରତି ଈର୍ଷାପର ନୁହେ ଏବଂ ଯିଏ ସୁଖ-ଦୁଃଖ ଏ ଦୁଇ ଅବସ୍ଥାର ଊର୍ଦ୍ଧ୍ୱରେ, ସେଇଭଳି ଗୋଟିଏ ସଚ୍ଚା ଭକ୍ତର ଜୀବନ ତାଙ୍କୁ ପ୍ରାପ୍ତ ହେଉ ବୋଲି କବି ଅନନ୍ୟ ପ୍ରାର୍ଥନା କରନ୍ତି ।

ସ୍ପଷ୍ଟ ଭାବରେ ଜଣାପଡ଼ୁଛି ଯେ ଧର୍ମମତ ବା ଧର୍ମଶାସ୍ତ୍ର

ଅପେକ୍ଷା ମାନବିକ ବ୍ୟକ୍ତିତ୍ୱର ବିକାଶ ଲାଗି ଏ ପ୍ରକାର ଭକ୍ତିର ଯଥେଷ୍ଟ ଆବଶ୍ୟକତା ରହିଛି । ମୁଖ୍ୟତଃ ଏହା ଗୋଟିଏ ପନ୍ଥା ଯାହା ଜୀବନରେ ରୂପାନ୍ତର ଆଣିଦିଏ ଏବଂ ମୁକ୍ତି ପ୍ରଦାନ କରେ । "ଭକ୍ତି ବନ୍ଧନ ହୀନ" । "ବାହ୍ୟିକ ସାହାଯ୍ୟ ନପାଇ ସ୍ୱାଧୀନ ଭାବରେ" ନିଜର ସର୍ବୋଚ୍ଚ ଦାବି ଉପରେ ଏ ଠିଆହୁଏ ଏବଂ "ଜ୍ଞାନ ନିଜେ ହିଁ ଏହାର ଅନୁଗତ" । ଏହାର ମୂଳ ରହିଛି ସରଳ ବିଶ୍ୱାସ ଏବଂ ପ୍ରେମରେ ଓ ନିଜର ପିତାମାତାଙ୍କ ପରି ଅତି ଘନିଷ୍ଠତମ ଗୋଟିଏ ରୂପର ନିତ୍ୟ ଅବଗତି ଭିତରେ । ଯେକୌଣସି ପାର୍ଥିବ ଜୀବନ ଯାପନ କରୁଥାଅ, କିମ୍ବା ସାମାଜିକ ଦାୟିତ୍ୱବୋଧରେ ଅଭିଭୂତ ହୋଇଥାଅ, ସେ ସବୁଠୁ ଦୂରରେ ରହି ତୁଳସୀ ଦାସ ଯେଉଁ ରାମଭକ୍ତି ସମର୍ଥନ କରୁଛନ୍ତି ତାହା ସାଧନ କରିବାକୁ ହେବ ଏବଂ ସାମାଜିକ ସ୍ତରରେ ମାନବିକ ସମ୍ପର୍କର ପ୍ରସଙ୍ଗ ଭିତରେ ତାହାକୁ ପ୍ରମାଣିତ କରିବାକୁ ହେବ । ପୃଥିବୀ ଯେପରି ଭଲ ମନ୍ଦ, ହର୍ଷ ବିଷାଦ ଯାତନାପୂର୍ଣ୍ଣ ହୋଇ ରହିଛି, ତାକୁ ସେ ସେହିପରି ଭାବରେ ଗ୍ରହଣ କରିଚନ୍ତି । ରାମପ୍ରେମ ସେ ସବୁର ରୂପାନ୍ତର ଆଣିଦିଏ । "କିଏ ଜାଣେ କିଏ ସ୍ୱର୍ଗକୁ ଯିବ କି ନରକକୁ ଯିବ ? କିନ୍ତୁ ରାମଭକ୍ତ ତୁଳସୀ ଦାସ ପକ୍ଷରେ ଏଇ ପୃଥିବୀ ମାଟିର ଜୀବନ ପ୍ରକୃତରେ ସୁନ୍ଦର !"

ପ୍ରକୃତରେ ଜଣାପଡୁଛି ଯେ, 'ରାମଚରିତ ମାନସ' ଯେଉଁମାନେ ମହାନ୍ ପ୍ରେମ ଓ ଭକ୍ତି ଦୃଷ୍ଟିରେ ଦାୟିତ୍ୱ ସଂପାଦନ କରିବାକୁ ପ୍ରସ୍ତୁତ, ସତେ ଯେପରି ସେହିମାନଙ୍କ ଜୀବନକୁ ପ୍ରଭାବିତ କରିବା ପାଇଁ କବିଙ୍କର ଏକ ବିରାଟ ସାଧନା ।

କବିଙ୍କ କଥା ଅନୁସାରେ ଗୁରୁଜଣ ପ୍ରକୃତ ଭକ୍ତର ଗୁଣ ଓ ସ୍ୱଭାବ ବୁଝିପାରିଥିଲେ । ସେମାନେ ହେଉଛନ୍ତି ଶିବ, ହନୁମାନ,

ଲକ୍ଷ୍ମଣ ଓ ଭରତ । ସେମାନଙ୍କ ମଧ୍ୟରୁ ସମସ୍ତେ ଯେପରି ରାମଙ୍କ ଲାଗି ଅବିଶ୍ରାନ୍ତ କର୍ମ-ତତ୍ପର, ସେଇପରି ରାମଭକ୍ତି-ସଂପର୍କିତ ନିଗୂଢ଼ ତତ୍ତ୍ୱର ଗୋଟିଏ ଗୋଟିଏ ଭଣ୍ଡାର ଘର । ଶ୍ରେଷ୍ଠ ଶ୍ରେଷ୍ଠ ଚରିତ୍ରଗୁଡ଼ିକ ସେମାନଙ୍କ ସାମାନ୍ୟତମ ସେବା ଦାନ କରିବାରେ କମ୍ ନିଷ୍ଠାପର ନୁହନ୍ତି । ସେବା କରିବାଟା ବଡ଼ କଥା ନୁହେଁ; ସେଇ ସେବାରେ କି ଭାବ ରହିଛି ତାହାହିଁ ବିଚାର୍ଯ୍ୟ । ସାଧୁ-ସନ୍ଥଙ୍କ ଉପରେ ଯେଉଁ ପରିମାଣରେ ଭରସା ରହିଛି, ରାମଙ୍କୁ ଗଙ୍ଗା ପାରି କରିଥିବା ନାବିକ ଏବଂ ରାମଙ୍କ ମଙ୍ଗଳ ପାଇଁ ଶ୍ରମଦାନ କରିଥିବା ମାଙ୍କଡ଼ ଓ ଶାଗୁଣା-ମାନଙ୍କ ଉପରେ ସେଇ ପରିମାଣରେ ଭରସା ମଧ୍ୟ ରହିଛି । ଚରିତ୍ରଟି ସେଇ ମାନବିକ ସ୍ତର ଦେଇ ଗତି କରିଥିବାରୁ ଜନସାଧାରଣଙ୍କ ହୃଦୟକୁ ଏହା ଅଧିକାର କରେ ଏବଂ କବିଙ୍କ ଆନ୍ତରିକ ତୃଷ୍ଣା ଏବଂ ଅଭିଳାଷକୁ ମଧ୍ୟ ସ୍ପର୍ଶ କରେ ।

ତୁଳସୀ ଦାସ ଦାର୍ଶନିକ ଗୋଷ୍ଠୀକୁ କଣ ଦାନ କରିଚନ୍ତି, ତାର ପ୍ରସାର ପାଇବା ପାଇଁ ବହୁ ପାଣ୍ଡିତ୍ୟପୂର୍ଣ୍ଣ ଉଦ୍ୟମ କରାଯାଇଛି । ବଡ଼ ଆଶ୍ଚର୍ଯ୍ୟର କଥା ଯେ, ଅଦ୍ୱୈତବାଦୀ, ଦ୍ୱୈତବାଦୀ, କ୍ଷମତା-ପନ୍ନ ଅଦ୍ୱୈତବାଦର ବିଶ୍ୱାସୀ ଇତ୍ୟାଦି ସବୁ ଗୋଷ୍ଠୀର ସମର୍ଥକ-ମାନେ ସେମାନଙ୍କ ନିଜ ନିଜ ଗୋଷ୍ଠୀର ମଙ୍ଗଳକର ମତ ତହିଁରୁ ସଂଗ୍ରହ କରିବାରେ ସମର୍ଥ ହୋଇଚନ୍ତି । ଏଥିରୁ ଜଣାପଡ଼ୁଛି କବି ପ୍ରତ୍ୟେକ ପ୍ରକାର ଦାର୍ଶନିକ ମତରେ କିପରି ପାରଦର୍ଶୀ ଥିଲେ; ଯଦିଚ ଈଶ୍ୱରିକ ଜୀବନର ବିଶ୍ୱମୈତ୍ରୀ ଭାବ ପ୍ରତି ତାଙ୍କର ବିଶ୍ୱସ୍ତତା ଥିଲା । ବରଂ ସେ କହନ୍ତି "ସେ ଏକା ଆତ୍ମାକୁ ଚିହ୍ନି-ପାରିବ, ଯେ ତିନୋଟି ମାୟାକୁ ଛାଡ଼ିପାରିଛି ।"

ଯେଉଁ ସହଜ ଉପାୟରେ ତୁଳସୀ ଦାସ ବିଭିନ୍ନ ଦାର୍ଶନିକ

ମତବାଦ ଏବଂ ଗୋଷ୍ଠୀଗତ ବିଶ୍ୱାସର ସମନ୍ୱୟ ଆଣିପାରିବାରେ ସମର୍ଥ ହୋଇପାରିଲେ ତାହା 'ରାମଚରିତ ମାନସ'ର ଅନ୍ୟତମ ଗୌରବ । ଅସୀମ ଓ ସସୀମ ମଧ୍ୟରେ, ଜ୍ଞାନମାର୍ଗ ଓ ଭକ୍ତିମାର୍ଗର ଅନୁଗାମୀଙ୍କ ମଧ୍ୟରେ, ରାମ ଓ ଶିବଙ୍କ ଉପାସକମାନଙ୍କ ମଧ୍ୟରେ ଯେଉଁ କୃତ୍ରିମ ଶ୍ରେଣୀ ବିଭାଗ ରହିଛି—ସେସବୁର ବ୍ୟର୍ଥତା ସମଗ୍ର ମହାକାବ୍ୟରେ ଦେଖାଇବା ପାଇଁ ସେ ବହୁ କଷ୍ଟ ସ୍ୱୀକାର କରିଛନ୍ତି । ସେ ବହୁ ଚରିତ୍ର ସୃଷ୍ଟି କରିଛନ୍ତି । ସେଇ ଚରିତ୍ରର ଓ ପ୍ରକୃତି ଭିତରେ ସେ ଦେଖାଇଛନ୍ତି ଭକ୍ତିପଥ ହେଉଛି କର୍ମପଥ ଜୀବନ ଏବଂ କର୍ମପଥ ହେଉଛି କେବଳ ମାତ୍ର ପରିପୂର୍ଣ୍ଣ ଜ୍ଞାନପଥ । ଏପରି ଦେଖାଇବାଦ୍ୱାରା ଉକ୍ତ ଶ୍ରେଣୀମାନଙ୍କ ମଧ୍ୟରେ ସମନ୍ୱୟ ସଂଘଟିତ କରିପାରିଛନ୍ତି, କୌଣସି ବିଶିଷ୍ଟ ଯୁକ୍ତି ବା ଯୁକ୍ତି ଖଣ୍ଡନ ଦ୍ୱାରା ନୁହେ ।

ଗୋଟିଏ ସାହିତ୍ୟିକ କୃତି ଦିଗରୁ ଦେଖିଲେ 'ରାମଚରିତ ମାନସ'ରେ ମହାକାବ୍ୟର ଅଧିକାଂଶ ଲକ୍ଷଣ ଦେଖାଯାଏ । ଉଦ୍ଦେଶ୍ୟର ଗାମ୍ଭୀର୍ଯ୍ୟ, ବିସ୍ତୃତ ପୃଷ୍ଠଭୂମି, ସଂଚିତ ଜ୍ଞାନରାଶିର ଉଲ୍ଲେଖ, ଜାତୀୟ ସଂସ୍କୃତି ଓ ବିଶ୍ୱଜନପ୍ରିୟତା, ଯାହା କି ପୃଥିବୀ ସାହିତ୍ୟର ମହାକାବ୍ୟ-ମାନଙ୍କ ଲକ୍ଷଣ, ସେ ସମସ୍ତ ସେଥିରେ ଅଛି । ସ୍ପଷ୍ଟ ଜଣାପଡ଼ୁଛି ଏ କାବ୍ୟ ଗଠନରେ କବି ପାରମ୍ପରିକ ସାଧାରଣ ନୀତି ନିୟମର ସହ ପାଳନ କରିଛନ୍ତି । ପ୍ରକୃତରେ ସେ ଯୁଗରେ ତାଙ୍କର ସୁଦୀର୍ଘ ବହୁ ପ୍ରଶଂସକ ତୁଳସୀ ଦାସଙ୍କୁ ବାଲ୍ମୀକି ମୁନିଙ୍କର ଅବତାର ବୋଲି ମନେ କରୁଥିଲେ । ତାଙ୍କର ବିଷୟବସ୍ତୁକୁ ତାଙ୍କର ନିର୍ବାଚନ ଅନୁଯାୟୀ ସେ ବ୍ୟବହାର କରିଛନ୍ତି । ସେଥିରେ ପରମ୍ପରା ବା ଆଦର୍ଶ ବାଧା ଦେଇନି । ରାମ ଏବଂ ରାମଙ୍କ ପ୍ରେମ

ପ୍ରତି ଯେଉଁମାନେ ଆପଣାକୁ ନିଜେ ଉନ୍ମୁକ୍ତ କରି ରଖିଚନ୍ତି, ସେମାନଙ୍କ ମଧ୍ୟରେ ରାମଚନ୍ଦ୍ରଙ୍କର ଘନିଷ୍ଠ ସମ୍ପର୍କ ଦେଖାଇବାରେ ତାଙ୍କର ଯେମିତି ପ୍ରଧାନ ଅନୁରାଗ ରହିଚି, ଗଳ୍ପଟିର ବର୍ଣ୍ଣନାରେ ସେତିକି ଅନୁରାଗ ରହିନି । ତାଙ୍କର ଭକ୍ତିପ୍ରବଣ ପ୍ରକୃତିକୁ ଯେଉଁ ଯେଉଁ ଘଟଣା ଓ ଯେଉଁ ଅବସ୍ଥା ସବୁ ଶାନ୍ତି ଦେଇପାରିବା ସମ୍ଭବ, ସେ ସବୁ ଉପରେ ସ୍ୱଭାବତଃ ଗୁରୁତ୍ୱ ଦେବାରେ ସେ ଆଗ୍ରହୀ ହୋଇପଡ଼ିଚନ୍ତି । ତାଙ୍କର ବର୍ଣ୍ଣନା ଏତେ ବିସ୍ତୃତ ନ ହୋଇ ବିସ୍ତୃତିରୁ ଟିକିଏ ବିରତ ହୋଇପାରିଥାନ୍ତା । ପ୍ରତି ସର୍ଗର ଆକାରରେ ଭାରସାମ୍ୟ ଏତେଟା ନଥାନ୍ତା; କିନ୍ତୁ ବହୁତ କଥୋପ-କଥନ, ଆବାହନ, ପ୍ରାର୍ଥନା ଇତ୍ୟାଦି ଦେବାର ଯେ ପ୍ରଲୋଭନ ତାକୁ ସେ ଏଡ଼ି ପାରି ନାହାନ୍ତି । କାରଣ ତାଙ୍କର ବଦ୍ଧମୂଳ ବିଶ୍ୱାସ ଥିଲି ମନକୁ ମୁକ୍ତ, ଜାଗ୍ରତ ଏବଂ ଉନ୍ନତ ରଖିବା ରାମ-କାହାଣୀ ବର୍ଣ୍ଣନାର ପ୍ରାଥମିକ ଉଦ୍ଦେଶ୍ୟ । ତାଙ୍କ ମହାକାବ୍ୟବର୍ଣ୍ଣିତ ରାମ-କାହାଣୀ ପରି ଅନ୍ୟ କୌଣସି ଗଳ୍ପ ନାହିଁ, ଯାହାକି ଏତେ ପରିମାଣରେ ମନକୁ ଶୁଦ୍ଧପୂତ ଏବଂ ପାପବିମୁକ୍ତ କରି ପାରିବ ।

ଭକ୍ତିପୂର୍ଣ୍ଣ ମୌଳିକ ତତ୍ତ୍ୱ ସମଗ୍ର ଗଳ୍ପଟିକୁ ସୁସ୍ପୃକ୍ତନ କରି ରଖିଚି ଯଦ୍ୱାରା ତୁଳସୀ ଦାସଙ୍କ ରାମ ଚରିତ-ମାନସ ମହାକାବ୍ୟ ଭାବରେ ଏକବାରେ ଭିନ୍ନ । ପାଶ୍ଚାତ୍ୟର ଉତ୍କୃଷ୍ଟ ସାହିତ୍ୟ ଗ୍ରନ୍ଥରେ ଗଢ଼ାଯାଇଥିବା ଗୋଟିଏ ମହାକାବ୍ୟ ଅପେକ୍ଷା ଏହାକୁ ବହୁ ପାଠକ ଗୋଟିଏ ଧର୍ମଶାସ୍ତ୍ର ବା ଦିବ୍ୟସଂଗୀତରୂପେ ଗ୍ରହଣ କରିଥାନ୍ତି; ତେଣୁ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

## 6 କାଶୀରେ ଗ୍ରନ୍ଥପରୀକ୍ଷା ଓ ବିଜୟ

ତୁଳସୀ ଦାସ ଯଦିଓ ଅଯୋଧ୍ୟାରେ 1574 ଖ୍ରୀଷ୍ଟାବ୍ଦରେ 'ରାମଚରିତ ମାନସ'ର ଲେଖା ଆରମ୍ଭ କରିଥିଲେ, ତଥାପି ବିଶ୍ୱାସ କରିବାର ଯଥେଷ୍ଟ କାରଣ ରହିଛି ଯେ, ସେ କାଶୀରେ କେତେ ବର୍ଷ ପରେ ଏହାକୁ ଶେଷ କରିବାକୁ ସମର୍ଥ ହୋଇଥିଲେ । ଚିତ୍ରକୂଟରେ ବିରାଟ ଧର୍ମପ୍ରେରଣା ଜାତ ହେବାର ଅବ୍ୟବହିତ ପରେ ଅଯୋଧ୍ୟାର ହୃଦୟଗ୍ରାହୀ ପରିବେଶ ଭିତରେ 'ରାମଚରିତମାନସ'ର ପ୍ରଥମ ତିନି ସର୍ଗ ଲେଖାଯାଇଥିଲା । ତାହା ସମଗ୍ର ଗ୍ରନ୍ଥରେ ଉତ୍କୃଷ୍ଟତମ ଲେଖା ବୋଲି ସହଜରେ କୁହାଯାଇପାରେ । ଏହି ତିନି ସର୍ଗର ଭାଷା ଏବଂ ପ୍ରକାଶଭଙ୍ଗୀର ସମୀଚୀନତା ଏମାନଂକଦ୍ୱାରା ପ୍ରତିଫଳିତ । ସଂସ୍କୃତି ରାମ-କାହାଣୀର ଗତି ଏବଂ ସ୍ଥିତି ପାଇଁ ବାତାବରଣ—ଏ ସବୁର ଯଥେଷ୍ଟ କାର୍ଯ୍ୟକାରିତା ଅଯୋଧ୍ୟା ଏବଂ ଅବଧ ନାମକ ଗୋଟିଏ ଅଞ୍ଚଳ ସହିତ ରହିଛି । ତୁଳସୀ ଦାସଙ୍କର ଏତେ ପ୍ରିୟ ଭୂମି ଅଯୋଧ୍ୟାକୁ ଛାଡ଼ି ଯିବାକୁ ତାଙ୍କୁ କିଏ ପ୍ରବର୍ତ୍ତାଇଲା ଏହା ଜାଣିବା କଷ୍ଟକର । ବହୁତ ପ୍ରକାର ଅନୁମାନ ଏ ସମ୍ପର୍କରେ କରାଯାଇଛି । କଥିତ ଅଛି, ସାଂପ୍ରଦାୟିକ କୁସଂସ୍କାରରୁ ମୁକ୍ତ ଓ ଉଦାର ମନସ୍କ ହୋଇଥିବାରୁ ସ୍ଥାନୀୟ ବୈରାଗୀମାନଙ୍କ ସହିତ ତାଙ୍କର ମତଭେଦ ଘଟିଲା । ଯେକୌଣସି ପ୍ରକାର ସାଂପ୍ରଦାୟିକ ମତବାଦ ତାଙ୍କ ସହଜାତ ଚରିତ୍ରର ବିରୁଦ୍ଧ ଥିଲା । ସମ୍ଭବତଃ ରାମନଗର (ଅଯୋଧ୍ୟା) ପ୍ରତି ତାଙ୍କର ସମସ୍ତ ଗଭୀର ଓ ସୁପ୍ରତିଷ୍ଠିତ ମମତା ଥିଲେ ସୁଦ୍ଧା, ମନ୍ଦିରମାନଙ୍କରେ ଯେଉଁ ଘଟଣାବଳୀର

ଅବସ୍ଥା କମ୍ବା ତଥାକଥିତ ଯୋଗୀ-ମୁନିମାନଙ୍କର ଯେଉଁ ଗତି ସେ ଦେଖିଲେ ତହିଁରେ ବାସ୍ତବିକ ସେ ସୁଖୀ ହୋଇପାରିନଥିଲେ । ସେ 'ଦୋହାଁବଳୀ'ରେ ଦୁଃଖର ସହିତ କହିଚନ୍ତି ଯେଉଁ ଲୋକ-ମାନଙ୍କର ଖାଦ୍ୟ ଓ ପରିଧାନ ଅତି ସାଧାରଣଧରଣର ସେଇମାନେ ଯୋଗୀଋଷି ଭାବରେ ଏବଂ ଯୋଗ୍ୟ ବ୍ୟକ୍ତି ଭାବରେ ପୂଜା ପାଆନ୍ତି । ସେ କହିଚନ୍ତି, "ଦେବାଳୟ ଏବଂ ପବିତ୍ର ତୀର୍ଥ ସ୍ଥାନ ଗୁଡ଼ିକ ଦୁଷ୍କର୍ମ ଓ ଦୁର୍ନୀତିର ଗହ୍ୱର । ଶାସକମାନେ ଡରେଇ ଥରେଇ ପ୍ରଜାମାନଙ୍କୁ ଶାସନ କରନ୍ତି । ଦେଶରେ ଅନିଷ୍ଟ କରିବା ପାଇଁ, ଗୁଣ୍ଡା, ଦସ୍ୟୁ ବା ଘାତକମାନଙ୍କର ସଂଖ୍ୟା ହଜାର ହଜାର ସଂଖ୍ୟାରେ ବଢ଼ି ଚାଲିଛି ।" ମୂର୍ଖ ଅସହିଷ୍ଣୁ ଜନତା ପ୍ରତି ତୁଳସୀ ଦାସଙ୍କର ସମ୍ମାନ ନ ଥିଲା । ଏଇମାନେ ନିଜର ଜୀବିକାର୍ଜନ ପାଇଁ କେବଳ ଗେରୁଆ ଲୁଗା ପିନ୍ଧୁଥିଲେ । ଆମ୍ଭେମାନେ ନିଶ୍ଚିତରୂପେ କହିପାରୁ ଯେ ଏଇମାନେ ତୁଳସୀ ଦାସଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ; ଯେହେତୁ ସେ ସାଂପ୍ରଦାୟିକ ଅନ୍ଧବିଶ୍ୱାସରୁ ମୁକ୍ତ ଥିଲେ । ଯେଉଁ ଆଚାର୍ଯ୍ୟ ପଣ୍ଡିତମାନେ ପ୍ରଧାନତଃ ଆଲୋକ ଓ ଶାନ୍ତିର ସନ୍ଧାନୀ ଥିଲେ, ସେହିମାନଙ୍କ ସହ ପ୍ରକୃତରେ ତୁଳସୀ ଦାସ ବନ୍ଧୁ ସମ୍ବନ୍ଧ ରଖିଥିଲେ । ସେତେବେଳେ କାଶୀ ହିନ୍ଦୁମାନଙ୍କର ଧର୍ମ ଓ ଶିକ୍ଷାର ପୀଠସ୍ଥଳ ଥିଲା । ତେଣୁ ସେ କାଶୀ ଯିବାକୁ ମନସ୍ଥ କରିଥିବେ; ଏଥିରେ ଅସମ୍ଭବ ବିଚାରିବାର କିଛି ନାହିଁ । ଏପରିକି ଅନ୍ୟ ପକ୍ଷରେ ଦେଖିବାକୁ ଗଲେ, ସେ ନୂତନ କ୍ଷେତ୍ର ଏବଂ ନୂତନ ସ୍ମରଣଭୂମି ଖୋଜୁଥିବେ, ଯେଉଁଠି ତାଙ୍କ ଆଶା ଓ ବିଶ୍ୱାସର ବାର୍ତ୍ତା ଜନଜୀବନ ପାଇଁ ପ୍ରଚାର କରିପାରିବେ ।

'ରାମଚରିତ-ମାନସ'ର ଚତୁର୍ଥ ସର୍ଗର ପ୍ରାରମ୍ଭିକ ପଂକ୍ତିଗୁଡ଼ିକରେ

ଆଶ୍ୱସ୍ତିର ଉଜ୍ଜ୍ୱଳ ସଙ୍କେତ ଦେଖିବାକୁ ମିଳେ । ତହିଁରେ ସେ କହିଚନ୍ତି, "କାଶୀ ଶିବ-ପାର୍ବତୀଙ୍କ ବାସଭୂମି, ଜ୍ଞାନ ଓ ଶିକ୍ଷାର ଭଣ୍ଡାର ଘର । ଏହି ସ୍ଥାନ ସର୍ବ ପାପ ବିନାଶ କରେ ଏବଂ ବନ୍ଧନରୁ ମୁକ୍ତି ପ୍ରଦାନ କରେ ।" ତେଣୁ ତାଙ୍କର ସମସ୍ତ ସେ ଏଠି କାହିଁକି କଟାଇଥିବେ, ଏହା ବୁଝିବାରେ କାରଣର ଅଭାବ ନାହିଁ ।

କାଶୀରେ ପହଞ୍ଚିବା ପୂର୍ବରୁ ଚିତ୍ରକୂଟଠାରେ ରାମଙ୍କ ପ୍ରତ୍ୟକ୍ଷ ଦର୍ଶନକାରୀ ଭକ୍ତ ଭାବରେ ତୁଳସୀ ଦାସଙ୍କ ଖ୍ୟାତି କାଶୀର ଜନ-ଜୀବନ ପାଖରେ ପହଞ୍ଚିପାରିଥିଲା ପରି ଜଣାପଡ଼ୁଥିଲା । ପ୍ରକୃତରେ 'ରାମଚରିତ ମାନସ'ର ଲେଖା ସମ୍ପୂର୍ଣ୍ଣ ହେବା ପରେ, ତାହା ଯେତେବେଳେ ଲୋକ ଲୋଚନକୁ ଆସିଲା ସେଥିରେ କବିଙ୍କର ରାମଭକ୍ତି, ବିଷୟବସ୍ତୁରେ ଅବଗାହନ, ତାଙ୍କ ଲିଖନଧାରାର ନବୀନତା, ଗଭୀର ମାନବିକତା, କବିତାଗୁଡ଼ିକର ଗତିଶୀଳତା ଓ ଗୀତିମୟତା ଯୋଗୁଁ ସମସ୍ତେ ଅତିରେ ଅତି ଆଗ୍ରହରେ ତାକୁ ସ୍ୱାଗତ କଲେ । ଏହି ପୁସ୍ତକ ମଧ୍ୟ ବାଦବିବାଦ ସୃଷ୍ଟି କରିଥିଲା । କାରଣ ଏହିଭଳି ଗୋଟିଏ ଗଭୀର ଭାବସମ୍ପନ୍ନ ଓ ଉଜ୍ଜ୍ୱଳ ଗୁଣ-ସମ୍ପନ୍ନ ଗ୍ରନ୍ଥ ସଂସ୍କୃତ ପରି ଦେବଭାଷାରେ ନ ଲେଖା ହୋଇ ଜନସାଧାରଣଙ୍କ ଭାଷାରେ ଲେଖା ହୋଇଥିଲା । ବିଭିନ୍ନ ମତବାଦର ଚିନ୍ତାଧାରା ଓ ବିଶ୍ୱାସର ସମନ୍ୱୟ ସ୍ଥାପନ ଲାଗି ଏବଂ ସର୍ବୋପରି ନାନା ଜଟିଳ ଧର୍ମ ଶାସ୍ତ୍ର ନିୟମ କିମ୍ବା କଠୋର ବ୍ରତ ଉପବାସ-ମୁକ୍ତ ଗୋଟିଏ ସିଧାସଳଖ ବିଶ୍ୱାସ ଉପରେ ଗୁରୁତ୍ୱ ଦେବାଲାଗି ଏଥିରେ ଚେଷ୍ଟା କରାଯାଇଥିଲା ।

ମୋଗଲ-ଯୁଗରେ କାଶୀର ସମାଜ ନାନା ଭାଗରେ ବିଭକ୍ତ ହୋଇଥିଲା । ସଂସ୍କୃତ ଶାସ୍ତ୍ର ପ୍ରବୀଣ ଜ୍ଞାନୀ ପଣ୍ଡିତମାନଙ୍କର

ଗୋଟିଏ ଗୋଷ୍ଠୀ ଥିଲା । ସମ୍ଭ୍ରାନ୍ତବଂଶୀୟ ବହୁ ବ୍ୟକ୍ତି ମଧ୍ୟ ବାସ କରୁଥିଲେ । ବିଭିନ୍ନ ସମ୍ପ୍ରଦାୟର ନେତାମାନେ ରହୁଥିଲେ ଏବଂ ସେମାନଙ୍କର ସମର୍ଥକମାନେ ପୂର୍ବୋକ୍ତ ଭାବରେ ଜୀବିକା ନିର୍ବାହ କରୁଥିଲେ । ସରଳ ନିଃସ୍ୱ ଜନତା ଆର୍ଥିକ ଦୁଃଖକଷ୍ଟ ଓ ସାମାଜିକ କଟକଣାର ଶିକାର ହୋଇ ଚଳୁଥିଲେ ।

ମଧୁସୂଦନ ସରସ୍ୱତୀଙ୍କ ପରି ପ୍ରକୃତ ପଣ୍ଡିତମାନେ ତୁଳସୀ-ଦାସଙ୍କ ଯୋଗ୍ୟତାକୁ ସ୍ୱୀକାର କରୁଥିଲେ ଏବଂ କବି ଓ ଭକ୍ତ ଭାବରେ ତାଙ୍କର ଶକ୍ତିମତ୍ତାକୁ ପରମ ସମ୍ମାନ ଦେଉଥିଲେ । ଜମିଦାର ତୋଡର ମଲ୍ଲ ଏବଂ ବହୁଭାଷାପ୍ରବୀଣ ଓ ସାହିତ୍ୟର ପୃଷ୍ଟପୋଷକ ଅବ୍ଦୁର୍ ରହିମ-ଇ-ଖାନାଙ୍କ ପରି ଅଳ୍ପ କେତେକ ବ୍ୟକ୍ତି ତାଙ୍କ ଲେଖାର ସତ୍ୟ ଓ ସୌନ୍ଦର୍ଯ୍ୟ ପାଇଁ ଯେତିକି, ତାଙ୍କର ଋଷିତୁଲ୍ୟ ଶୁଦ୍ଧ ଚରିତ୍ର ପାଇଁ ସେତିକି ତାଙ୍କ ପ୍ରତି ଆକୃଷ୍ଟ ହେଉଥିଲେ । ଲୋକମାନେ ବହୁଭାବରେ ତାଙ୍କ ପ୍ରେମ ଆଶା ଓ ବିଶ୍ୱାସର ବାର୍ତ୍ତା ଆନନ୍ଦର ସହିତ ଗ୍ରହଣ ନ କରି ରହିପାରିଲେ ନାହିଁ । ଧର୍ମ-ଗୋଷ୍ଠୀର ରକ୍ଷକମାନେ ବିଶେଷତଃ ଶୈବମାନେ ପ୍ରକାଶ୍ୟ ଭାବରେ ତାଙ୍କୁ ସୁଖ ପାଇଲେ ନାହିଁ । କାରଣ ସେମାନେ ଭୁଲରେ ମନେ ମନେ ଭାବିନେଲେ ଯେ ତୁଳସୀ ଦାସ ଶୈବ ମତର କ୍ଷତି କରି ରାମମତ ପ୍ରଚାର କରିବାକୁ ଚେଷ୍ଟା କରୁଚନ୍ତି । ଯେକୌଣସି ଦିଗରୁ ହେଉ, ସେମାନେ ସ୍ପଷ୍ଟ ଦେଖିପାରିଲେ ଯେ, ତାଙ୍କର ଉଦାର ଧର୍ମ-ମାତ ଯଦି ଏପରି ପ୍ରସାର ଲାଭ କରେ ତେବେ ସେମାନଙ୍କର ବ୍ୟବସାୟ ଚାଲିଯିବ । ସ୍ୱାର୍ଥସମ୍ପୃକ୍ତ ଦଳେ ଲୋକ ତାଙ୍କର କ୍ଷତି କରିବାକୁ ଏବଂ ତାଙ୍କର ଗୌରବ ହ୍ରାସ କରିବାକୁ ନାନା ଚକ୍ରାନ୍ତ ସୃଷ୍ଟି କଲେ । ବହୁଦିନରୁ ଚଳିଆସୁଥିବା କିମ୍ବଦନ୍ତୀରୁ ଜଣାଯାଏ

ଯେ ତାଙ୍କର ରାମଚରିତ ପାଣ୍ଡୁଲିପିକୁ ଚୋରିକରି ନେଇଯିବା ପାଇଁ ଭଡ଼ାଟିଆ ଚୋରମାନଙ୍କୁ ଅଣାଯାଇଥିଲି । 'ରାମଚରିତ ମାନସ'ର ମୂଲ୍ୟବୋଧକୁ ଆକ୍ରମଣ କରାହେଲା ଏବଂ ସଂକଳ୍ପବଦ୍ଧ ତାଙ୍କର କେତେ ସମାଲୋଚକ କହିଲେ ଯେ, ସେ ପୁସ୍ତକଟି କାର୍ଯ୍ୟକାରୀ ହୋଇପାରିବ ନାହିଁ ଯଦି ଶିବ ନିଜେ ତାଙ୍କର ସମର୍ଥନର ମୋହର ଏଇ ପୁସ୍ତକ ଉପରେ ନ ଦିଅନ୍ତି । ତୁଳସୀ ଦାସଙ୍କ ଜୀବନ ସମ୍ପର୍କରେ ବହୁ ଆଶ୍ଚର୍ଯ୍ୟଜନକ କିମ୍ବଦନ୍ତୀ ରହିଛି । ଅଦ୍ଭୁତ ଭାବରେ ସେ ତାଙ୍କ ବିପକ୍ଷମାନଙ୍କ ପ୍ରତିଶୋଧ-ସାଧନରୁ ରକ୍ଷା ପାଇଥିଲେ । ସେମାନଙ୍କ ଅପକର୍ମ ସମ୍ପର୍କରେ କବି କିଛି ପ୍ରତ୍ୟକ୍ଷ ଉଲ୍ଲେଖ କରି-ନାହାନ୍ତି; କିନ୍ତୁ ତାଙ୍କ ଗ୍ରନ୍ଥରେ କେତେଗୁଡ଼ିଏ ଅର୍ଥବୋଧକ ପଂକ୍ତି ରହିଛି । କି ପ୍ରକାର ପ୍ରତିରୋଧର ସମ୍ମୁଖୀନ ସେ ହୋଇଥିଲେ ସେ ସମ୍ପର୍କରେ ସେ ପଂକ୍ତିଗୁଡ଼ିକ ଆଲୋକପାତ କରନ୍ତି ।

ଶିବଙ୍କ ପ୍ରତି ତାଙ୍କର ନିଷ୍ଠାପୂର୍ଣ୍ଣ ଭକ୍ତି ଥିଲା । କାଶୀ ନଗରୀର ଇଷ୍ଟଦେବତା ଭାବରେ ଶିବ ତାଙ୍କୁ ଏବଂ ତାଙ୍କର ସ୍ୱାର୍ଥକୁ ରକ୍ଷା କରିବେ—ଏଇ ଆଶାରେ ସେ କାଶୀ ଆସିଥିଲେ । ତାଙ୍କର ଭକ୍ତିପୂର୍ଣ୍ଣ ବିଶ୍ୱାସ ଥିଲା ଶିବ ତାଙ୍କର ଦେବତା ଏବଂ ଗୁରୁ । କାରଣ ରାମପ୍ରେମର ପ୍ରେରଣା ତାଙ୍କର ମାଧ୍ୟମରେ ଏବଂ ତାଙ୍କଠାରୁ ସେ ପାଇଥିଲେ ।

ରାମଙ୍କ ତୁଣ୍ଡରେ ସେ କୁହାଇଛନ୍ତି, "ଯେ ଶିବଙ୍କ ବିପକ୍ଷରେ ଯାଏ, ସେ ମୋ ବିପକ୍ଷରେ ଯାଏ" । ଗୋଷ୍ଠୀଗତ ଧର୍ମାନ୍ଧ ବ୍ୟକ୍ତିମାନଙ୍କ ପକ୍ଷରେ କବି-ଜୀବନର ଏ ନିଷ୍ଠା ଓ ଯଥାର୍ଥ ଭାବ-ଧାରାର ଆବଶ୍ୟକତା କିଛି ନ ଥିଲା ।

ଶିବଙ୍କୁ ମାନୁଥିବା ଦଳେ ଭୂତପୂଜକ ଥିଲେ । ଏଇମାନଙ୍କର

କାର୍ଯ୍ୟକଳାପକୁ ତୁଳସୀ ଦାସ ଭଲ ପାଉ ନ ଥିଲେ । "ସେମାନେ ବେଦ ଉପନିଷଦ୍, ପୁରାଣ ଓ ବ୍ୟାକରଣକୁ କାଠ ଖଣ୍ଡ ପରି ମନେକରି ଗୋଡ଼ରେ ଆଡ଼େଇ ଦେଉଥିଲେ" । "କଳିଚକାଗ୍ନି ଜଠାଇ ନିଜର ଓ ଅନ୍ୟମାନଙ୍କ ଅନ୍ତଃସ୍ଥଳକୁ ଦଗ୍ଧ କରୁଥିଲେ" । ମୂର୍ଖ, ଅଶିକ୍ଷିତ, ଧର୍ମ-ଗୋଷ୍ଠୀଭୁକ୍ତ ସାଧୁମାନଙ୍କୁ ସେ ସବୁଦିଗରୁ ଘୃଣା କରୁଥିଲେ । ସେମାନେ "ମାୟା ଏବଂ ଅସତ୍ୟ" ଇତ୍ୟାଦି ବିଷୟ ଆଲୋଚନା କରୁଥିଲେ ଏବଂ ପ୍ରକୃତରେ ସେମାନେ ଜାଣୁ ନ ଥିଲେ କି ବିଷୟରେ ସେମାନେ ଆଲୋଚନା କରୁଚନ୍ତି ।

ତାଙ୍କର ଏ ପ୍ରକାର ମନୋଭାବ ସେ ଯୁଗ କିମ୍ବା ସେ ଯୁଗର ପ୍ରଚଳିତ ମତଗତି ସହିତ ସମତାଳରେ ଚାଲିପାରିଲା ନାହିଁ । ଧୀରେ ଧୀରେ ଅଥଚ ନିଶ୍ଚିତରୂପେ ପ୍ରତିରୋଧର ପ୍ରଚଣ୍ଡ ବାତ୍ୟା ତାଙ୍କ ଚାରିଆଡ଼େ ଘେରେଇ କରି ଉଠିଲା । ଏଇ ପ୍ରତିରୋଧ କେବଳ ବାକ୍ୟୁଦ୍ଧରେ ସୀମାବଦ୍ଧ ହୋଇ ରହି ନ ଥିଲା । ତାଙ୍କର ବିପକ୍ଷବାଦୀମାନେ ତାଙ୍କୁ ହତାହତ କରିବାକୁ ଯେତେଦୂର ଯିବାର ଯାଇପାରିଲେ । ନୈରାଶ୍ୟରେ କାଶୀର ପ୍ରଧାନ ଦେବତା ଶିବଙ୍କୁ ସେ କହିଚନ୍ତି, "ଦିନଯାକ ଠକମାନେ ମୋତେ ଟଣାଓଟରା କରନ୍ତି, ରାତିରେ ଚୋରମାନେ ମୋତେ ଘେରି ରହନ୍ତି; ତୁମେ ଯେବେ ମୋତେ ଟିକିଏ କରୁଣା-କଟାକ୍ଷରେ ନ ଚାହିଁବ, ଏହି ସହରରେ ମୋର ସ୍ଥିତି ଅସମ୍ଭବ ହୋଇପଡ଼ିବ ।"

ପରେ ବିପକ୍ଷମାନେ ତାଙ୍କର ପୂର୍ବ ଇତିହାସ, ବିଶେଷ ଭାବରେ ତାଙ୍କର ଜାତି, ଗୋଷ୍ଠୀ, ଶିକ୍ଷା ଦୀକ୍ଷା ଓ ଲାଳନପାଳନ ଇତ୍ୟାଦି ବିଷୟରେ ପ୍ରଶ୍ନ ପଚାରି ତାଙ୍କୁ ବ୍ୟଙ୍ଗ ବିଦ୍ରୂପ କଲେ । ଆକ୍ରାନ୍ତ ଅବସ୍ଥାରେ ଜଣେ ଆକ୍ରମଣକୁ ସମ୍ମୁଖୀନ ହେଲା ପରି, କବି

ସେମାନଙ୍କୁ ବହୁତଗୁଡ଼ିଏ ପଂକ୍ତିରେ କହିଛନ୍ତି ଯେ ତାଙ୍କର ଜାତି ନାହିଁ କି ଗୋଷ୍ଠୀ ନାହିଁ, କିମ୍ବା ସେସବୁରୁ ଗୋଟିଏ ହେଲେ ସେ ରଖିବାକୁ ଚାହାନ୍ତି ନାହିଁ । ସେମାନେ ସ୍ୱାଧୀନ ଭାବରେ ଯେ କୌଣସି ନାମ ତାଙ୍କୁ ଦେଇପାରନ୍ତି । ରାମ ତାଙ୍କର କେବଳ ମାତ୍ର ପ୍ରଭୁ ଓ ସ୍ୱାମୀ ଏବଂ "ତାଙ୍କର ଶତ୍ରୁମାନେ ରାମଙ୍କ ଶତ୍ରୁର ଭାଗ୍ୟ ଲାଭ କରିବେ" ।

କେତେଗୁଡ଼ିଏ ସୂଚନାରୁ ଜଣାପଡ଼ୁଛି ଯେ, ତାଙ୍କୁ ଜୀବନରେ ମାରିଦେବା ପାଇଁ ପ୍ରଚେଷ୍ଟା ଚାଲିଥିଲା । ସେ ପ୍ରତ୍ୟକ୍ଷ ଭାବରେ ଏହାର ସତ୍ୟତା ସମ୍ବନ୍ଧରେ କିଛି ଉଲ୍ଲେଖ କରି ନାହାନ୍ତି । କେବଳ କହିଚନ୍ତି, ରାମ ଯେତେବେଳେ ତାଙ୍କର ପାଖେ ପାଖେ ରହିଚନ୍ତି, କେହି ତାଙ୍କୁ ହତ୍ୟା କରିପାରିବେନି । ଧୈର୍ଯ୍ୟର ସହ ସବୁ ଦୁଃଖ-କଷ୍ଟ ବରଣ କରି ସମସ୍ତ ପ୍ରତିରୋଧକୁ ସହିଯିବାଟା ଶ୍ରେୟସ୍କର । ଅନ୍ୟମାନଙ୍କୁ ଦୋଷ ଦେବା ପରିବର୍ତ୍ତେ ସେ ଅତି ଚଞ୍ଚଳ ନିଜର ଆତ୍ମ-ସମୀକ୍ଷା କରୁଥିଲେ ଏବଂ ନିଜର ସକଳ ଅପୂର୍ଣ୍ଣତା ଭିତରେ ନିଜ ଅବସ୍ଥାର କୈଫିୟତ ଖୋଜୁଥିଲେ । କାଶୀ ଅବସ୍ଥାନ ସମୟରେ ତାଙ୍କ ଲେଖାରେ କଳି (କଳିଯୁଗ) ସମ୍ପର୍କରେ ଅସଂଖ୍ୟ ଉଲ୍ଲେଖ ରହିଚି । କଳି ବା ସଇତାନ ସହ ମଣିଷର ଯେତେବେଳେ ଦ୍ୱନ୍ଦ୍ୱ ଯୁଦ୍ଧ ଲାଗିଲା, ବୋଧହୁଏ ମଣିଷ "ଯଥେଷ୍ଟ ଭାବରେ ସତର୍କ" ନ ଥିଲା; କିମ୍ବା ପୂର୍ଣ୍ଣ ଭାବରେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ନଥିଲା । ତାଙ୍କ ନିର୍ମଳ ଦୃଷ୍ଟିଭଙ୍ଗୀର ଏ ଗୋଟିଏ ପରିମାପ । କାରଣ ତାଙ୍କ ଚତୁର୍ଦ୍ଦିଗରେ ଧର୍ମାନ୍ଧତା ଓ ଧ୍ୱଂସ ଭାବନା ପୂରିରହିଥିଲା । ଏହା-ମଧ୍ୟରେ ସେ ଦେଖିଲେ ଧର୍ମାନ୍ଧତା ପ୍ରତି ଉପଯୁକ୍ତ ପ୍ରତ୍ୟୁତ୍ତର ଅଧିକ ଧର୍ମାନ୍ଧତା ନୁହେ । ତାଙ୍କ ବିପକ୍ଷବାଦୀମାନଙ୍କୁ ପ୍ରକୃତରେ ଧର୍ମ ବିଚଳିତ

କରି ନଥିଲା, କରିଥିଲା ଧର୍ମର ଅଗ୍ରଗତି ।

ତେଣୁ ଯେତେବେଳେ ସମାଲୋଚନାର ଏଇ ସ୍ୱର ସମୟ-ଅନୁକ୍ରମେ ମରିଆସିଲା, ତାଙ୍କ ବିପକ୍ଷମାନେ ତାଙ୍କ ଉଦ୍ଦେଶ୍ୟ ସାଧନରେ ବିଫଳକାମ ହେଲେ । ଦୁଷ୍ଟ ବୃତ୍ତି ଏବଂ କୁସଂସ୍କାରର ଊର୍ଦ୍ଧ୍ୱକୁ ଉଠିବାଲାଗି ତାଙ୍କର ପବିତ୍ର ହୃଦୟ ଏବଂ ସାମର୍ଥ୍ୟ ସହ ନାନାପ୍ରକାରର ଆଶ୍ଚର୍ଯ୍ୟ ସଂଘଟଣ ଏବଂ ସ୍ୱର୍ଗୀୟ ସାହାଯ୍ୟ ଯୋଗୁ ଏହା ସମ୍ଭବ ହୋଇପାରିଲା ।

ତୁଳସୀ ଦାସଙ୍କର ପ୍ରିୟ ନିବାସସ୍ଥଳୀଗୁଡ଼ିକ ରହିଥିଲା ଗଙ୍ଗା-କୂଳରେ ; ଏଇ ପବିତ୍ର ନଦୀ ନିକଟରେ ସେ ରହିବାକୁ ସୁଖ ପାଉଥିଲେ । "ଭାଗୀରଥୀ ଜଳପାନ ଏବଂ ରାମନାମ ଜପ ମୋର ଦୈନନ୍ଦିନ କର୍ମ" ଏ କଥା ସେ ତାଙ୍କ କବିତାବଳୀରେ ପ୍ରକାଶ କରିଛନ୍ତି । କାଶୀର କେତେଗୁଡ଼ିଏ ସ୍ଥାନ ତାଙ୍କ ଜୀବନ ସହିତ ବିଶେଷରୂପେ ସଂପୃକ୍ତ ଥିଲା । ପ୍ରହ୍ଲାଦ ଘାଟରେ ଥିବା ତାଙ୍କର ପ୍ରିୟବନ୍ଧୁ ଗଙ୍ଗାରାମ ଯୋଷୀଙ୍କ ଘରେ ସେ ଅତିଥି ଭାବରେ ରହୁଥିଲେ । କଥିତ ଅଛି, ଗୋପାଳ ମନ୍ଦିରର ଗୋଟିଏ ପ୍ରକୋଷ୍ଠରେ ବସି ତାଙ୍କର ବିରାଟ ଭକ୍ତିଗ୍ରନ୍ଥ 'ବିନୟ ପତ୍ରିକା'ର କେତେକ ଭାଗ ସେ ରଚନା କରିଥିଲେ । କବିଙ୍କର ପ୍ରିୟ ଦେବତା ଥିଲେ ହନୁମାନ —ବାରଟି ମନ୍ଦିର ସେ ତାଙ୍କ ପାଇଁ ନିର୍ମାଣ କରାଇଥିଲେ । ତନ୍ମଧ୍ୟରୁ ଗୋଟିଏ ସଂକଟମୋଚନଠାରେ ପ୍ରତିଷ୍ଠିତ । ପୁନଶ୍ଚ ଅସିଘାଟଠାରେ ଗୋଟିଏ ପ୍ରକୋଷ୍ଠ ଭିତରେ କବି ତାଙ୍କ ଦୀର୍ଘ ଜୀବନର ଶେଷ ଦିନଗୁଡ଼ିକ ଅତିବାହିତ କରିଥିଲେ ।

ଏହା ନିଶ୍ଚିତ କଥା ଯେ ତାଙ୍କର ଜୀବନକାଳ ଭିତରେ କବି ଭାବରେ ଏବଂ ଦେବପୁରୁଷ ଭାବରେ ସେ ବିଶେଷ ଖ୍ୟାତି ଅର୍ଜନ

କରିପାରୁଥିଲେ । କେବଳ କବି ବା ସାଧୁ-ସନ୍ନ୍ୟାସୀମାନେ ଯେ ତାଙ୍କ ପାଖକୁ ଯାଉଥିଲେ, ତା’ ନୁହେଁ । ଯାହାଙ୍କ ପାଇଁ ଏବଂ ଯେଉଁମାନଙ୍କ ବୁଝିପାରିବା ଭାଷାରେ ସେ ଲେଖାସବୁ ଲେଖିଚନ୍ତି, ସେଇ ସାଧାରଣ ଲୋକମାନେ ମଧ୍ୟ ତାଙ୍କ ପାଖକୁ ଆସ୍ତେ ଆସ୍ତେ ବହୁସଂଖ୍ୟାରେ ଆସୁଥିଲେ । ଦୁଇଟି କାମରେ ସେ ଖୁବ୍ ତତ୍ପର ଥିଲେ । ଗୋଟିଏ ହେଉଚି ମହାବୀରଙ୍କ ମନ୍ଦିର ନିର୍ମାଣ, ଅନ୍ୟଟି ହେଉଚି ବାର୍ଷିକ ରାମଲୀଳା ଉତ୍ସବ । ରାମାୟଣ ଅନୁଯାୟୀ ରାମଲୀଳା ଉତ୍ସବ ସେ ଆସିଘାଟଠାରେ ବନ୍ଦୋବସ୍ତ କରିଥିଲେ । ଆସିଘାଟର ଦକ୍ଷିଣରେ ଥିବା ସ୍ଥାନଟି ରାମଲୀଳା ଉତ୍ସବରେ ଲଙ୍କା ବୋଲି ବ୍ୟବହୃତ ହେଉଥିଲା । ସେଇ ସ୍ଥାନଟି ସେଇ ନାମରେ ପରିଚିତ ହୋଇ ରହିଆସିଚି ।

ପଣ୍ଡିତ ଗଙ୍ଗାରାମ ଯୋଷୀ କାଶୀରେ ସମସ୍ତ ବନ୍ଧୁମାନଙ୍କ ମଧ୍ୟରେ କବିଙ୍କର ଜଣେ ପ୍ରଧାନତମ ବନ୍ଧୁ । ଜଣାଯାଏ ସେ କିଛି ଅର୍ଥ ଯୋଗାଡ଼ କରି ହନୁମାନ ଦେବଙ୍କର କେତୋଟି ମନ୍ଦିର ନିର୍ମାଣ ଦାରାଇବାରେ ତାଙ୍କୁ ସାହାଯ୍ୟ କରିଥିଲେ । ଏ ସମ୍ପର୍କରେ ଗୋଟିଏ କାହାଣୀ ରହିଚି । ଥରେ ରାଜଘାଟ ରାଜାଙ୍କର ପୁଅ ଶିକାର କରିବାକୁ ଯାଇଥିଲେ । ଶିକାର ସମୟରେ ବାଟ ଭୁଲିଗଲେ । ତାଙ୍କର ବାପା ବଡ଼ ବ୍ୟସ୍ତ ହୋଇ ପଣ୍ଡିତ ଗଙ୍ଗାରାମ ଯୋଷୀଙ୍କୁ ଡକାଇଲେ ଏବଂ ପଚାରିଲେ, “ରାଜକୁମାର ଘରକୁ ଫେରିଆସିବେ କି ନାହିଁ ?” ଗଙ୍ଗାରାମ ରାଜାଙ୍କୁ ପ୍ରତିଶ୍ରୁତି ଦେଲେ ଯେ ତାର ଉତ୍ତର ସେ ତା’ ଆରଦିନ କହିବେ । ଘରକୁ ଫେରିଆସି ସେ କି ଅବସ୍ଥାରେ ପଡ଼ିଚନ୍ତି—ସବୁ ବୃତ୍ତାନ୍ତ ତୁଳସୀ ଦାସଙ୍କୁ କହିଲେ । ତୁଳସୀଦାସଙ୍କର ଜ୍ୟୋତିଷ ଶାସ୍ତ୍ରରେ ପରମ ଆଗ୍ରହ । ସେ ଗଣନା କରି କହିଲେ, ପିଲାଟି ତା’ ଆରଦିନ ସଂଧ୍ୟା ବେଳକୁ ଘରକୁ ଫେରିବ ।

ଏ ଭବିଷ୍ୟତ ବାଣୀ ସତକୁ ସତ ଫଳିଲା ଏବଂ ରାଜା ଲକ୍ଷେ ଟଙ୍କା କବିଙ୍କ ବନ୍ଧୁଙ୍କୁ ପୁରସ୍କାର ଦେଲେ । କୃତଜ୍ଞ ପଣ୍ଡିତ ସେଇ ଟଙ୍କାତକ ନେଇ କବିଙ୍କ ପାଦତଳେ ଥୋଇଦେଲେ । ତୁଳସୀ ଦାସ ସେ ଟଙ୍କାତକ ଛୁଇଁବାକୁ ମନା କଲେ । ତାଙ୍କର ବନ୍ଧୁ ତାଙ୍କୁ ବାଧ୍ୟ କରିବାରୁ ସେ ବାରହଜାର ଟଙ୍କା ନେବାକୁ ରାଜି ହେଲେ । ସେଥିରେ ସେ ହନୁମାନଙ୍କ ପାଇଁ ବାରଟି ମନ୍ଦିର ନିର୍ମାଣ କରିବାରେ ଖର୍ଚ୍ଚ କଲେ । ସେଇ ମନ୍ଦିରମାନଙ୍କ ମଧ୍ୟରୁ ଗୋଟିଏ ସଙ୍କଟମୋଚନଠାରେ ଏପର୍ଯ୍ୟନ୍ତ ରହିଛି । ସହର ଭିତରେ ସେଇ ମନ୍ଦିରଟି ସବୁଠୁ ବେଶି ଜନପ୍ରିୟ ।

ତୋଦରମଲ ନାମକ କବିଙ୍କର ଆଉ ଜଣେ ପ୍ରିୟ ବନ୍ଧୁ ଥିଲେ । ସେ ଜଣେ ଜମିଦାର ଏବଂ କବିଙ୍କର ଏକନିଷ୍ଠ ଭକ୍ତ ଓ ବିଶ୍ୱାସୀ । କଥିତ ଅଛି, କବି 'ରାମଚରିତ ମାନସ'ର ଗୋଟିଏ ପାଣ୍ଡୁଲିପି ନିରାପଦରେ ରହିବା ପାଇଁ ତାଙ୍କ ପାଖରେ ଥୋଇଦେଇଥିଲେ । କାଶୀ ପରିତ୍ୟାଗ କରି ଚାଲିଯିବା ପାଇଁ କବି ଯେତେବେଳେ କୃତସଂକଳ୍ପ ହେଲେ ସେତେବେଳେ ତୋଦରମଲଙ୍କ ଅନୁରୋଧକ୍ରମେ କାଶୀରେ ରହିବା ପାଇଁ ପୁଣି ସେ ନିଷ୍ପତ୍ତି ବଦଳାଇଥିଲେ । ତୋଦରମଲ ମରିଯିବାରୁ 'ପାଞ୍ଚନାମ' ନାମକ ଗୋଟିଏ ଦଲିଲ ସେପ୍ଟେମ୍ବର ୨୭ ତାରିଖ ୧୬୧୨ ଖ୍ରୀଷ୍ଟାବ୍ଦରେ ପ୍ରକାଶ ପାଇଲା; ଯଦ୍ଦ୍ୱାରା ତୋଦରମଲଙ୍କ ଭୂସମ୍ପତ୍ତି ତାଙ୍କ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବିଭକ୍ତ କରାଯାଇଥିଲା । କଥିତ ଅଛି, ଏଇ ଦଲିଲ ଉପରେ କବିଙ୍କ ନିଜ ହାତଲେଖା କେତୋଟି ପଂକ୍ତି ରହିଥିଲା । ଏଇ ଦଲିଲଟି ତୋଦରମଲଙ୍କ ଏଗାର ପୁରୁଷଯାଏ ରହି ଆସିଥିଲା ଏବଂ ବର୍ତ୍ତମାନ କାଶୀର ରାଜା ନିରାପଦରେ ତାଙ୍କ ପାଖରେ ଏହା ରଖିଛନ୍ତି ।

ତୁଳସୀଦାସ କୌଣସି ବ୍ୟକ୍ତିବିଶେଷଙ୍କ ଉପରେ ପ୍ରାୟ କିଛି ଲେଖି-ନଥିଲେ । କିନ୍ତୁ ତୋଦରମଲଙ୍କ ମୃତ୍ୟୁରେ ସେ ଯେଉଁ ପ୍ରାଣସ୍ପର୍ଶୀ ପଂକ୍ତିଗୁଡ଼ିକ ଲେଖିଥିଲେ, ସେଥିରେ ତାଙ୍କୁ ଛାଡ଼ି ଚାଲିଯାଇଥିବା ତାଙ୍କ ବନ୍ଧୁଙ୍କ ପାଇଁ ତାଙ୍କ ପ୍ରାଣର ଗଭୀରତମ ଶୋକ ପ୍ରତିବିମ୍ବିତ ହୋଇଛି । "ଚାରୋଟି ଗାଁର ରାଜା ପ୍ରକୃତରେ ବିଶାଳ ହୃଦୟବାନ୍ —ଏଇଭଳି ଗୋଟିଏ ମନୁଷ୍ୟ ଜୀବନର ଦୀପ ଲିଭିଗଲା ଏଇ ଦୁଃସମୟରେ ! ରାମଭକ୍ତିର ଭାର ଥରେ ସ୍କନ୍ଧରେ ବହନ କଲା ପରେ ତାକୁ ସେ କାନ୍ଧରୁ ଖସାଇ ପାରିନାହାନ୍ତି, ଅଥଚ ବହୁ ବ୍ୟକ୍ତି ତାଙ୍କୁ କହିଥିଲେ କାନ୍ଧରୁ ଖସାଇଦେବା ପାଇଁ; ବର୍ତ୍ତମାନ ସେ ରାମଙ୍କ ରାଜ୍ୟକୁ ଚାଲିଯାଇଛନ୍ତି । ତୁଳସୀ ସେଥିପାଇଁ ଏତେ ବ୍ୟସ୍ତ ହେଉନି । କିନ୍ତୁ ତାର ଏତିକି ମାତ୍ର ଦୁଃଖ ଯେ, ସେ ତାର ଗୋଟିଏ ନିର୍ମଳ ହୃଦୟର ବନ୍ଧୁଙ୍କୁ ଛାଡ଼ି ଜୀବନର ଯାତ୍ରାପଥରେ ଚାଲିବ ।" କଥିତ ଅଛି ଯେ, ବଲ୍ଲଭ ଗୋସ୍ୱାମୀମାନଙ୍କର ପ୍ରତିରୋଧ ହେତୁ ତୁଳସୀଦାସଙ୍କୁ ଗୋପାଳ ମନ୍ଦିର ଛାଡ଼ିବାକୁ ପଡ଼ିଥିଲା । ସେତେ-ବେଳେ ତୋଦରମଲ ତାଙ୍କୁ ଅସି ଘାଟଠାରେ ନିଜ ମନ୍ଦିର ଭିତରେ ରହିବାକୁ କହିଥିଲେ ।

ବହୁ ଗଳ୍ପରେ ବିସ୍ତୃତ ବର୍ଣ୍ଣନା ରହିଛି ଯେ, ତତ୍କାଳୀନ କବି, ସାଧୁ ଓ ସିଦ୍ଧପୁରୁଷମାନେ ତୁଳସୀ ଦାସଙ୍କ ସଙ୍ଗ ଲାଭ କରିବାକୁ ଆସୁଥିଲେ । ସେମାନେ ହେଉଛନ୍ତି ସୁରଦାସ, ନନ୍ଦଦାସ, ବନାରସୀ ଦାସ, କେଶବଦାସ, ହିତ ହରିବଂଶ, ମିରାବାଈ, ଅବଦୁର ରହିମ୍ ଖାନ-ଇ-ଖାନା 'ରହିମ୍' ଏବଂ ରାମ୍‌ଖାନ୍ । ତାଙ୍କ କବିତା ଶୁଣି ସେମାନେ ମୁଗ୍ଧ ହୋଇଯାଉଥିଲେ । ଐତିହାସିକ କାଗଜପତ୍ର-ମାନଙ୍କରେ ସେପରି କିଛି ନିର୍ଦ୍ଦିଷ୍ଟ ତାରିଖ ଓ ଲେଖାମାନ ନଥିବାରୁ

ଏ ସମସ୍ତଙ୍କ ସମ୍ବନ୍ଧରେ ବିଶ୍ୱାସଯୋଗ୍ୟ କିଛି କହିବା ସମ୍ଭବ ହୋଇ ପାରୁନି । କବିଙ୍କ ସମସାମୟିକ ଏବଂ 'ଭକ୍ତମାଳର' ଗ୍ରନ୍ଥକାର ନାଭ ଦାସ ତାଙ୍କ ସମ୍ବନ୍ଧରେ ଉଲ୍ଲେଖ କରିଚନ୍ତି ଯେ ସେ ବାଲ୍ମୀକିଙ୍କ ଅବତାର ଥିଲେ । "ତତ୍‌କାଳୀନ କଳୁଷିତ ବ୍ୟକ୍ତିମାନଙ୍କୁ ମୁକ୍ତି ଦେବାକୁ ଜନ୍ମଲାଭ କରିଥିଲେ ।" ବିଶ୍ୱାସ କରିବାକୁ ବେଶ୍ କାରଣ-ମାନ ରହିଚି ଯେ ତୁଳସୀ ଦାସ ଏବଂ ଏଇ କବିମାନଙ୍କ ମଧ୍ୟରେ ସ୍ନେହ ସମ୍ମାନର ଆଦାନ ପ୍ରଦାନ ହେଉଥିଲି । କିନ୍ତୁ ଆଶ୍ଚର୍ଯ୍ୟର କଥା, ଏଇ କବି ଓ ପ୍ରଶଂସକମାନେ ସମ୍ପର୍କଚ୍ୟୁତ ହୋଇ ରହୁଥିଲେ । ଅବଶ୍ୟ ସାଧାରଣତଃ ଏଥିରେ କାହାର କିଛି କ୍ଷତି ହେଉନଥିଲା । ନାଭଦାସ ଏବଂ ନନ୍ଦଦାସଙ୍କ ପରି କୃଷ୍ଣମତର ଭକ୍ତମାନେ ମୂଳତଃ ଥଟ୍ଟା ବା ଟାହିଲି କରିବାକୁ ଆସିଲି ପରି ଜଣାପଡ଼ିଲେ ମଧ୍ୟ ସେମାନେ ଶୁଭେଚ୍ଛା ପୋଷଣ କରୁଥିଲେ । ତୁଳସୀ ଦାସ ସୁର ଦାସଙ୍କ ସଂଗୀତ ଶୁଣିବାକୁ ଏତେ ଭଲପାଉଥିଲେ ଯେ ସେ ତାଙ୍କର ବହୁ ସଂଗୀତକୁ ଅନୁକରଣ କରି ଶ୍ରୀକୃଷ୍ଣ ଗୀତାବଳୀ ନାମକ ଗୋଟିଏ ସଂଗୀତ ପୁସ୍ତକ ଶ୍ରୀକୃଷ୍ଣଙ୍କ ଗୁଣ ଗାଥାକୁ ନେଇ ଲେଖିଥିଲେ । ଜୌନପୁରର କବି ବନାରସୀ ଦାସ ଜଣେ ଜୈନ । ସେ ରାମାୟଣକୁ ପ୍ରଶଂସା କରି ଗୋଟିଏ କବିତା ଲେଖିବାରୁ ତୁଳସୀ ଦାସ ତତ୍‌କ୍ଷଣାତ୍ ପାର୍ଶ୍ୱନାଥଙ୍କୁ ପ୍ରଶଂସା କରି ଭକ୍ତିପୂର୍ଣ୍ଣ ଗୋଟିଏ ସଂଗୀତ ଲେଖିଦେଲେ । ସଂସ୍କୃତଜ୍ଞ ପଣ୍ଡିତ ମଧୁସୂଦନ ସରସ୍ୱତୀ ଶୈବ-ମତାବଲମ୍ବୀ ଥିଲେ । କିନ୍ତୁ ଉପଯୁକ୍ତ ତର୍କ ବିତର୍କ ପରେ ତାଙ୍କର ଏଇ ଶୈବ ମତ ତୁଳସୀ ଦାସଙ୍କର ଭକ୍ତିମୟ କାବ୍ୟିକ ପ୍ରତିଭାକୁ ସ୍ୱୀକାର କରିବାରେ ପ୍ରତିବନ୍ଧକ ହୋଇନଥିଲା । ଅବଦୁର ରହିମ୍ ଖାନ୍-ଇ-ଖାନା ଜଣେ ମୁସଲମାନ କବି ଏବଂ ଶାସକ । କିନ୍ତୁ ଏ ଦୁଇ କବି ପରସ୍ପରକୁ

ଅଭିବାଦନ କରିବାରେ କୁଣ୍ଠାବୋଧ କରୁନଥିଲେ । ଏ ସବୁ ତାଙ୍କର ଧର୍ମ ସମ୍ପର୍କୀୟ ସାଧାରଣ ଦୃଷ୍ଟିଭଙ୍ଗୀକୁ ଯେତେ ପରିମାଣରେ ଦେଖାଇଦିଏ, ସେତେ ପରିମାଣରେ ମଧ୍ୟ ଦେଖାଇ ଦିଏ ସେ କପରି ଆଦର ସମ୍ମାନର ପାତ୍ର ଥିଲେ ।

ଶାସକ ଗୋଷ୍ଠୀର ଲୋକମାନେ ମଧ୍ୟ ତାଙ୍କର ବନ୍ଧୁ ଓ ପ୍ରିୟଜନ ହୋଇପାରିଥିଲେ । ରାଜା ମାନସିଂ ଏବଂ ଜଗତ ସିଂ—ଏ ଦୁଇ ଜଣଙ୍କ ନାଁ ଏ ସମ୍ପର୍କରେ ନିର୍ଦ୍ଦିଷ୍ଟ ଭାବରେ ଉଲ୍ଲେଖଯୋଗ୍ୟ ।

ଦିଲ୍ଲୀର ମୋଗଲ ସମ୍ରାଟଙ୍କ ପାଖକୁ ସେ ଯାଇଥିଲେ କି ନାହିଁ ଏ କଥା ଠିକ୍ ଭାବରେ କହିବା କଷ୍ଟକର । କଥିତ ଅଛି ସେ ଅଦ୍ଭୁତ କୌଶଳମାନ ଦେଖାଉଚନ୍ତି ବୋଲି ଶୁଣି ସମ୍ରାଟ ଜାହାଙ୍ଗୀର କବିଙ୍କୁ ତାଙ୍କର ଅତିଥି ହେବାପାଇଁ ଏବଂ ଅଦ୍ଭୁତ କୌଶଳମାନ ପ୍ରଦର୍ଶନ କରିବା ପାଇଁ ଡାକିଥିଲେ । ତତ୍‌କାଳୀନ ଶାସନାଧୀନ ଐତିହାସିକମାନେ ଏ ସମ୍ପର୍କରେ କିଛି ଉଲ୍ଲେଖ କରିନାହାନ୍ତି । କଅଣ ପ୍ରକୃତରେ ଘଟିଥିଲା ତାର ଗୋଟିଏ ସ୍ପଷ୍ଟ ଚିତ୍ର ପାଇବା ପାଇଁ କବି ଯେଉଁ ଅସ୍ପଷ୍ଟ ଇଙ୍ଗିତ ଦେଇଚନ୍ତି ତାହା ଯଥେଷ୍ଟ ନୁହେଁ । 'ଭକ୍ତମାଳ' ଟୀକାରେ ପ୍ରିୟଦାସ କହିଚନ୍ତି—"କବି ଯେତେବେଳେ ଦିଲ୍ଲୀର ବାଦଶାହଙ୍କୁ ଭେଟିଲେ ଦିଲ୍ଲୀର ବାଦଶାହ ତାଙ୍କୁ ଆଶ୍ଚର୍ଯ୍ୟ କର୍ମମାନ ଦେଖାଇବାକୁ କହିଲେ । ତୁଳସୀ ଦାସ ଉତ୍ତର ଦେଲେ—ଅଦ୍ଭୁତ କର୍ମ ସମ୍ବନ୍ଧରେ ଏ ଯେଉଁ ସବୁ କାହାଣୀ, ତାହା ସମ୍ପୂର୍ଣ୍ଣ ମିଥ୍ୟା । ରାମଙ୍କ ଠାରେ ଭକ୍ତି ବିଶ୍ୱାସ ପ୍ରତ୍ୟେକେ ରଖିବା ଉଚିତ ।" କବିଙ୍କର ସ୍ୱାଭାବିକ ଢଙ୍ଗରେ ଏ ହେଉଚି ନିର୍ଭିତ ଉତ୍ତର । ଜୀବନର ଉତ୍ତରାର୍ଦ୍ଧରେ ତୁଳସୀ ଦାସ କାଶୀରେ ଜଣେ ଯଶସ୍ୱୀ ପୁରୁଷ ଭାବରେ ରହିଥିଲେ । ତତ୍‌କାଳୀନ ବିଶିଷ୍ଟ

ବ୍ୟକ୍ତିମାନେ ତାଙ୍କୁ ଦେଖା କରିବାକୁ ଆସୁଥାନ୍ତି । ମନେହୁଏ କବି ନିଜେ, କି ପ୍ରଧାନ ବ୍ୟକ୍ତି କି କ୍ଷମତାଶାଳୀ ବ୍ୟକ୍ତି, କାହା ସହିତ ସମ୍ପର୍କ ସ୍ଥାପନ ଲାଗି ଏତେ ଆଗ୍ରହୀ ହେଉନଥିଲେ । ଦର୍ଶକମାନଙ୍କ ମଧ୍ୟରୁ ଅନ୍ତତଃ କେତେକ ନିରାଶ ହୋଇ ଫେରିଯାନ୍ତି । କାରଣ, ସେତେବେଳେ କବି ଲେଖୁଥାନ୍ତି କିମ୍ବା ଧ୍ୟାନମଗ୍ନ ଥାନ୍ତି । ଅନେକ ସୂଚନା ମିଳୁଛି ଯେ, ଯେବେ କୌଣସି ଉଚ୍ଚ ମହଲରୁ ତାଙ୍କୁ ଯିବାପାଇଁ ଡାକରା ଆସେ, ସେ ବଡ଼ ଅସ୍ୱସ୍ତି ବୋଧ କରନ୍ତି । ସେ କହନ୍ତି, "ସମୟ ଥିଲା ଯେତେବେଳେ ମୁଁ ଦ୍ୱାରେ ଦ୍ୱାରେ ଭିକ ମାଗି ବୁଲୁଥିଲି; ଏବେ ରାଜ୍ୟର ରାଜା ମହାରାଜାମାନେ ମୋର ପାଦତଳେ ।" ଏହା କିମିତି ହେଲା ସେ ତାର କାରଣ ମଧ ଜାଣନ୍ତି । ସେତେବେଳେ "ରାମଙ୍କୁ ଛାଡ଼ି ତୁଳସୀ ଥିଲା ।" ବର୍ତ୍ତମାନ ରାମ ତା' ପାଖରେ ଅଛନ୍ତି । ପ୍ରଭୁ "ମୁଠେ ଧୂଳିକି ପର୍ବତରୁ ବଳି ବଡ଼ିଠି କରିଛନ୍ତି । ଏ ଯୁଗର ଜଣେ ପ୍ରସିଦ୍ଧ ସାଧୁସନ୍ଥ ଭଳି ଭାବରେ ତାଙ୍କୁ ସ୍ୱାଗତ କରାଯାଉଛି । ଏଇ ହେଉଛି ପ୍ରଭୁଙ୍କର ଅଦ୍ଭୁତ କର୍ମ । କିନ୍ତୁ ମନେହୁଏ ତୁଳସୀ ତାଙ୍କ ଭାଗ୍ୟର ଏ ପରିବର୍ତ୍ତନରେ ପଥଭ୍ରଷ୍ଟ ହୋଇନାହାନ୍ତି । ସେ କହିଚନ୍ତି "ଯେବେ ଜଣେ ହୀନ ଦୁର୍ବଳ ଘାସକଟାଳି ପାହାଡ଼ପରି ସୁନାବୋଝଟେ ଧରି ଆସିବ ସେଥିରେ ତା ଘରର କେବଳ ଦୈନ୍ୟ ମେଣ୍ଟିପାରେ, କିନ୍ତୁ ତା ହୃଦୟର ଦୈନ୍ୟ ମେଣ୍ଟିବନି । ଦାରିଦ୍ର୍ୟ ଓ ସୌଭାଗ୍ୟ ଉଭୟ ଦୃଶ୍ୟ ଭାବରେ ଗର୍ହିତକର ଏବଂ ଉଭୟ ଯେ ଦ୍ୱିଗୁଣ ଭାବରେ ଯନ୍ତ୍ରଣାଦାୟକ, ତାହା ଅନୁଭବ କରି, ତୁଳସୀ ଦାରିଦ୍ର୍ୟ ମୂର୍ତ୍ତିରେ କାଳି ବୋଳି ଦେଇଛି । କରୁଣାର ସହିତ ରାମଙ୍କ ସେବାରେ ନିଜକୁ ନିୟୋଜିତ କରି, ବାସନା ହାରା ପ୍ରତାରିତ

ହେବା ଅବସ୍ଥାରେ ସେ ଆଉ ରହିନ ।" ସେ ହୃଦୟଙ୍ଗମ କରିଚନ୍ତି ଯେ ବୈଷୟିକ ଉନ୍ନତି ମନୁଷ୍ୟର ଆଧ୍ୟାତ୍ମିକ ଉନ୍ନତି ପାଇଁ କଲ୍ୟାଣକର ନୁହେଁ । ସେ ନିଜକୁ ନିଜେ ସ୍ମରଣ କରାଇଦେଉଥିଲେ ଯେ ପ୍ରଭୁ ହିଁ ତାଙ୍କର ଏକ ମାତ୍ର ଆଶ୍ରୟସ୍ଥଳ ।

ଜୀବନର ଏଇ ଅଧ୍ୟାୟରେ ସେ ଅଦ୍ଭୁତ କର୍ମମାନ ଦେଖାଇ-ଥିଲେ ବୋଲି ବହୁତ କାହାଣୀ ରହିଚି । ଏଇ କାହାଣୀଗୁଡ଼ିକ ସବୁବେଳେ କବି ଓ ସନ୍ଥଜନମାନଙ୍କ ଲେଖାରେ ବାରମ୍ବାର ଏତେ ପରିମାଣରେ ପୁନରାବୃତ୍ତି ହୋଇ ଆସିଚି ଯେ ସରଳ ଭକ୍ତପ୍ରାଣ ଜନସାଧାରଣଙ୍କ ଭିତରେ ଏଗୁଡ଼ିକ ନିତ୍ୟ ପ୍ରଚଳିତ ହେବା ଦ୍ୱାରା, ସେମାନେ ଏଗୁଡ଼ିକୁ ସେଇ ନାମ ମୂଲ୍ୟରେ ଗ୍ରହଣ କରନ୍ତି । ଏହା ନ୍ୟାୟତଃ ମନେକରାଯାଇପାରେ । ସହଜରେ ଜଣାପଡ଼ୁଚି ଯେ ଭକ୍ତି ସମ୍ମାନର ପାତ୍ର ଭାବରେ ସେ ରହିଆସିଥିବାରୁ ଏଇ ଭକ୍ତି ଓ ସମ୍ମାନର କେତେକ ପରିମାଣ ନିର୍ଭର କରୁଥିଲା ତାଙ୍କପରି ଅଦ୍ଭୁତ-କର୍ମୀର ଖ୍ୟାତି ଉପରେ, ଯିଏ କି ମନ୍ତ୍ରମୁଗ୍ଧ ଜୀବନ ଯାପନ କରୁଥିଲେ । ସେଇ ଅଦ୍ଭୁତ କର୍ମ ମଧ୍ୟରୁ କେତୋଟି ଅଧିକ ଭାବରେ ତାଙ୍କର ଦକ୍ଷତା ଅପେକ୍ଷା ତାଙ୍କ ବ୍ୟକ୍ତିତ୍ୱକୁ ପରିପ୍ରକାଶ କରେ । ସେ ନିଜେ ଏତେ ବିନମ୍ର, ଏତେ ଭଦ୍ର ଏବଂ ବିଶେଷ ଭାବରେ ଏତେ ସରଳ ଓ ନିଷ୍କପଟ ଥିଲେ ଯେ, ତାଙ୍କ ବ୍ୟବହାର ସହିତ କୌଣସି ମ୍ୟାଜିକ୍ ବା ଯାଦୁବିଦ୍ୟା ଜଡ଼ିତ ରହିବାର ବାସନାକୁ ସଂପୃକ୍ତ ରଖିବା ଅତିବ କଷ୍ଟକର । ଏହା କହିଲେ ଅଧିକ ଯଥାର୍ଥ ହେବ ଯେ, ଯେଉଁ ଆଶ୍ଚର୍ଯ୍ୟ ଲୋକମାନଙ୍କ ଉପରେ ଶକ୍ତିଶାଳୀ ପ୍ରଭାବ ବିସ୍ତାର କରିଥିଲା, ସେ ହେଉଚି ତାଙ୍କର ସ୍ୱଚ୍ଛ ସରଳତା, ତାଙ୍କର ଶାନ୍ତ ଅବିଚଳିତ ମନ, ଧର୍ମରେ ମହାନ୍ ଉଦାରତା ଏବଂ

**ପଥଭ୍ରଷ୍ଟ ଓ ବିପନ୍ନଙ୍କ ପ୍ରତି କରୁଣା ।**

କାଶୀବାସ ବେଳେ ସେ ବହୁ ଖ୍ୟାତି ଲାଭ କରିଥିଲେ ଏବଂ ଉତ୍ତର ପ୍ରଦେଶ ଓ ବିହାରରେ ବହୁତ ସ୍ଥାନ ଭ୍ରମଣ କରିଥିଲେ । କିନ୍ତୁ ଲେଖା ଓ ଭଗବତ୍ ଧ୍ୟାନରେ ତାଙ୍କର ପ୍ରଧାନ ଆଗ୍ରହ ଥିଲା । ଏହି ବର୍ଷମାନଙ୍କରେ ସେ ସୃଷ୍ଟିମୂଳକ ସାହିତ୍ୟ ଲେଖାର ନୂତନ ଶିଖରରେ ପହଞ୍ଚିଥିଲେ ଏବଂ ଆଧ୍ୟାତ୍ମିକ ଜ୍ଞାନ ଲାଭକରିଥିଲେ ।

# 7. କାବ୍ୟକୃତି

କାଶୀକୁ ଆସିବାର କେତେ ବର୍ଷ ପରେ ଯେଉଁ ରାମଚରିତ ମାନସର ଲେଖା ସେ ସମ୍ପୂର୍ଣ୍ଣ କରିଥିଲେ ତାହା ନିଃସନ୍ଦେହ-ଭାବରେ ତୁଳସୀଦାସଙ୍କୁ ବିପୁଳ ଯଶର ଅଧିକାରୀ କରିଥିଲା ଏବଂ ଶ୍ରୋତାମାନଙ୍କ ନିକଟରେ ଲୋକପ୍ରିୟ କରିଥିଲା । ଏହି ଗ୍ରନ୍ଥର ଲେଖା ସରିବା ପରେ ସେ ପ୍ରାୟ ଅର୍ଦ୍ଧ ଶତାବ୍ଦୀକାଳ ବଞ୍ଚିରହିଥିଲେ । ଏହି ଅମର ମହାକାବ୍ୟର ସ୍ରଷ୍ଟା ଭାବରେ ତାଙ୍କ ଖ୍ୟାତି ଦୃଢ଼-ଭାବରେ ପ୍ରତିଷ୍ଠିତ ହୋଇ ସାରିବା ପରେ, ତାଙ୍କର ଅନ୍ୟାନ୍ୟ ଗ୍ରନ୍ଥମାନଙ୍କର ଅଧିକାଂଶ ଭାଗ ଲିଖିତ ଓ ସଂଗୃହୀତ ହୋଇଥିଲା ।

ତୁଳସୀ ଦାସଙ୍କ ଗ୍ରନ୍ଥ ସମୂହର ଦୀର୍ଘ-ତାଲିକା ରହିଚି । କିଂତୁ ପଣ୍ଡିତମାନେ ଏକମତ ଯେ କେବଳ ବାରଟି ଗ୍ରନ୍ଥ ତାଙ୍କ ନିଜର । ଏଇ ବାରଟି କାବ୍ୟ ଗ୍ରନ୍ଥ ହେଉଚି — ବୈରାଗ୍ୟ ସନ୍ଦୀପନୀ, ରାମାଜ୍ଞା ପ୍ରଶ୍ନ ରାମଲଲ୍ଲାନହଛୁ, ଜାନକୀ-ମଙ୍ଗଳ, ରାମଚରିତମାନସ, ପାର୍ବତୀ ମଙ୍ଗଳ, କୃଷ୍ଣ ଗୀତାବଳୀ, ବିନୟ ପତ୍ରିକା, ଗୀତାବଳୀ, ଦୋହାବଳୀ, ବାରବୈଇ ରାମାୟଣ ଏବଂ କବିତାବଳୀ । ରାମ-ଚରିତ ମାନସ, ରାମାଜ୍ଞା ପ୍ରଶ୍ନ, ପାର୍ବତୀ ମଙ୍ଗଳ ଇତ୍ୟାଦି କେତୋଟି ଗ୍ରନ୍ଥ ଛଡ଼ା, ଅନ୍ୟ ସବୁ ଗ୍ରନ୍ଥ କେବେ ଲେଖା ହୋଇଥିଲା, ତାର ସୂଚନା କବି ଦେଇ ନାହାନ୍ତି । ସମ୍ଭବତଃ ସନ ତାରିଖ ନ ଥିବା ଗ୍ରନ୍ଥଗୁଡ଼ିକର ଅଧିକାଂଶ ଗୀତ ଭିନ୍ନ ଭିନ୍ନ ସମୟରେ ଲେଖାଯାଇ ସଂଗ୍ରହ କରାଯାଇଚି । ରାମଚରିତ ମାନସର ସବୁଠୁ ଯେଉଁ ପୁରୁଣା

ପାଣ୍ଡୁଲିପି ବର୍ତ୍ତମାନ ମିଳୁଛି, ତାହା କବିଙ୍କ ମୃତ୍ୟୁର ଷୋଡ଼ଏ ବର୍ଷ ପୂର୍ବରୁ 1604 ଖ୍ରୀଷ୍ଟାବ୍ଦରେ ଲେଖାଯାଇଥିଲା । ବର୍ତ୍ତମାନ ତାହା ଅଯୋଧ୍ୟାରେ ସଂରକ୍ଷିତ । ଲକ୍ଷ୍ନୌ ନିକଟବର୍ତ୍ତୀ ମାଲିହାବାଦଠାରେ ରାମଚରିତମାନସର ଆଉ ଗୋଟିଏ ପାଣ୍ଡୁଲିପି ରଖାଯାଇଛି । ବୈଦେଶିକ ଏବଂ ଭାରତୀୟ ଭାଷାରେ ଏ ମହାକାବ୍ୟର ଭାଷାନ୍ତର ଏବଂ ଭାଷ୍ୟ ଲେଖିବାର ଶେଷ ନାହିଁ । ତେଣୁ ଏଇ ସଂରକ୍ଷିତ ପାଣ୍ଡୁଲିପି, ମାନସର ପ୍ରକୃତ ମୂଲ୍ୟ ନିର୍ଦ୍ଧାରଣର ଗୋଟିଏ ମାପ-କାଠି ।

ତାଙ୍କର ସମସ୍ତ କାବ୍ୟ ଗ୍ରନ୍ଥ ଭିତରେ ରାମ ଏବଂ ରାମକାହାଣୀ ହେଉଛି ପ୍ରଧାନ ବିଷୟବସ୍ତୁ ଏବଂ ପ୍ରେରଣାର ଉତ୍ସ । ମନେହୁଏ ମହାକାବ୍ୟ ଲେଖି ସାରିବା ପରେ କବି ନିଜକୁ ଗୀତି କବିତାରେ ପ୍ରକାଶ କରିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଯେଉଁ ରାମ-କାହାଣୀର କ୍ଷୀଣ ସୂତ୍ରଦ୍ୱାରା କୌଣସି ଗୋଟିଏ କବିତା ସଂଗ୍ରହର ସମସ୍ତ କବିତା ଏକତ୍ର କରାଯାଇଛି ସେଇ ରାମକାହାଣୀ ଅନେକ ସମୟରେ ପଶ୍ଚାତ୍‌ପଟରେ ରହିଯାଏ ଏବଂ ପୁରୋଭାଗକୁ ଚାଲିଆସେ ସୌନ୍ଦର୍ଯ୍ୟ, ବୃତ୍ତ ବା ଛନ୍ଦ, ଆଲଙ୍କାରିକ ପରିକଳ୍ପନା ଓ ସଂଗୀତ-କଳା, ଯାହାପ୍ରତି କବିଙ୍କର ଗଭୀର ଅନୁରାଗ ରହିଛି ।

ଗୀତାବଳୀରେ ରାମକାହାଣୀ ଗୀତ ଆକାରରେ ବର୍ଣ୍ଣିତ । କିନ୍ତୁ କାହାଣୀଟିକୁ ବଢ଼ାଇବା ପାଇଁ କିମ୍ବା ବିଶିଷ୍ଟ ଘଟଣାମାନଙ୍କର ମେଳ ରଖିବା ପାଇଁ କୌଣସି ପ୍ରଚେଷ୍ଟା କରାଯାଇନି । ସରଳ ଅକୃତ୍ରିମ ଭାବପ୍ରବଣତା ଏବଂ ସାଙ୍ଗୀତିକ କଳା ଯୋଗୁ ଗୀତ-ଗୁଡ଼ିକ ମାଧୁର୍ଯ୍ୟମୟ । କବି ଭାବଚିତ୍ର ଦୃଶ୍ୟ ଏବଂ ଘଟଣାରାଜି ନିର୍ବାଚନ କରିଚନ୍ତି ଯାହା କି ଆପେ ଆପେ ଗୀତି କବିତାର

ବର୍ଣ୍ଣନାରେ ଅନ୍ତର୍ଭୁକ୍ତ ହୋଇପାରିବ । ସେଗୁଡ଼ିକରେ ମନୋରମ ଛନ୍ଦର ସଂପଦ ରହିଛି । ସେହି ରାଗରାଗିଣୀର ଗୁଣରେ ଏହି ଗୀତଗୁଡ଼ିକ ରଚାଯାଇଛି ସେହି ସଂଗୀତମୟ ରାଗରାଗିଣୀ ସହିତ ହିନ୍ଦୁ ଭାବଧାରାର ନିବିଡ଼ ସଂପର୍କ ଦେଖାଯାଏ । ତୁଳସୀ ଦାସଙ୍କର ପ୍ରତ୍ୟକ୍ଷ ଭାବରେ ସଂଗୀତ ପ୍ରତି ଆଗ୍ରହ ଥିଲା । କବି ଏହି ଗୀତ ଗୁଡ଼ିକ ଉଚ୍ଚାଙ୍ଗ ସୁବକ ସଂଗୀତଜ୍ଞଙ୍କ ପାଇଁ ଲେଖିଥିଲେ । ଏହି-ମାନେ ରାମଙ୍କ ଗୌରବ ଗାଥା ଉତ୍କଣ୍ଠିତ ଧର୍ମ-ପ୍ରାଣ ଶ୍ରୋତା-ମାନଙ୍କୁ ଶୁଣାଉଥିଲେ । କିମ୍ବଦନ୍ତୀ ଭିତରେ ଏ କଥା ରହି ଆସିଛି । ଏଥିରେ ଅସମ୍ଭବ ମନେକରିବାର କିଛି ନାହିଁ ।

ଗଭୀର ଆଧ୍ୟାତ୍ମିକ ଭାବସଂପଦ ଭିତରେ ବୁଡ଼ି ରହିଥିଲେ ମଧ୍ୟ ଯେଉଁ ନରନାରୀଙ୍କ ମଧ୍ୟରେ ତୁଳସୀ ଦାସ ବିଚରଣ କରୁଥିଲେ ସେମାନଙ୍କ ଭାଗ୍ୟ ଓ ଜୀବନ ପ୍ରତି, ଏବଂ ସେମାନଙ୍କୁ ରାମ କାହାଣୀରେ ଆକୃଷ୍ଟ କରିବାର ଦିଗ ପ୍ରତି ତାଙ୍କର ଜୀବନ୍ତ ଆଗ୍ରହ ଥିଲା । ତିନୋଟି କ୍ଷୁଦ୍ର ଅଥଚ ପ୍ରାଣବିମୋହନ ସାହିତ୍ୟିକ ଶ୍ରୀସମ୍ପନ୍ନ ପୁସ୍ତକ, ଯଥା—ରାମଲଲାନହଛୁ, ପାର୍ବତୀ ମଙ୍ଗଳ, ଜାନକୀ ମଙ୍ଗଳ—ବୋଧହୁଏ, ବିଶେଷ ଭାବରେ ମହିଳାମାନଙ୍କୁ ଆକୃଷ୍ଟ ଓ ମୁଗ୍ଧ କରିବା ପାଇଁ ଲେଖାଯାଇଥିଲା । ରାମଲଲାନହଛୁ କୋଡ଼ିଏଟି ପଦ ପୂର୍ଣ୍ଣ ଗୋଟିଏ ପୁସ୍ତକ । ଏଥିରେ ବ୍ରତୋପନୟନ ଓ ବିବାହ ସଂପର୍କୀୟ ଉତ୍ସବର ବର୍ଣ୍ଣନା ରହିଛି । ଅଯୋଧ୍ୟା ରାଜପ୍ରାସାଦର ମାଙ୍ଗଳିକ ଘଟଣାବଳି ଏବଂ ଆନନ୍ଦ ଉତ୍ସବର ଦୃଶ୍ୟାବଳୀକୁ ଏ ପୁସ୍ତକ ସ୍ମରଣ କରାଇଦିଏ ।

ପାର୍ବତୀ ମଙ୍ଗଳରେ କବି ଶିବ-ପାର୍ବତୀଙ୍କ ବିବାହ-ଉତ୍ସବ ବର୍ଣ୍ଣନା କରିଛନ୍ତି । ଆଗରୁ କବି ଏ ଘଟଣାକୁ 'ମାନସ'ରେ

ବର୍ଣ୍ଣନା କରିଥିଲେ । ତେବେ ସ୍ୱତନ୍ତ୍ର ସାହିତ୍ୟ ଗ୍ରନ୍ଥ ଭାବରେ ଏହାର ନିଜର ଗୋଟିଏ ମାଧୁର୍ଯ୍ୟ ଅଛି । ସଂକ୍ଷିପ୍ତ ଗ୍ରନ୍ଥରେ ଏହାର ସୃଷ୍ଟି । ଏହାର ଲେଖନ ଭଙ୍ଗୀରେ ମିତାଚାର ଏବଂ ସରଳତା ଜଣେ ମହା-କାବ୍ୟର କବି ପକ୍ଷରେ ନିଶ୍ଚୟ ଏକ ବିଜୟ । 1586 ଖ୍ରୀଷ୍ଟାବ୍ଦରେ ଏହା ଲେଖା ହୋଇଥିବାରୁ, ଜଣାପଡ଼ୁଛି ଯେ ଏହାର ବହୁ ବର୍ଷ ପରେ ସେ ମାନସର ଲେଖା ଶେଷକରିଥିଲେ । ଶିବଙ୍କୁ ନିନ୍ଦାକରି ରାମଙ୍କୁ ଗୌରବମଣ୍ଡିତ କରୁଥିଲେ ବୋଲି ଯେଉଁମାନେ ତାଙ୍କ ବିରୋଧରେ ଅଭିଯୋଗ ଆଣୁଥିଲେ, ଏଇ ପାର୍ବତୀମଙ୍ଗଳ ତାଙ୍କୁ ଉପଯୁକ୍ତ ଉତ୍ତର ନିଶ୍ଚୟ ଦେଇଥିବ ।

ଲେଖନଭଙ୍ଗୀ ଏବଂ ବିଷୟ ବସ୍ତୁ ଦିଗରୁ ପାର୍ବତୀମଙ୍ଗଳ ଏବଂ ଜାନକୀମଙ୍ଗଳ ମଧ୍ୟରେ ନିବିଡ଼ ସାଦୃଶ୍ୟ ଦେଖିବାକୁ ମିଳେ । ଜାନକୀମଙ୍ଗଳରେ ରାମ ଓ ଜାନକୀଙ୍କ ବିବାହ ଦୁଇଶ ଷୋହଳଟି ପଦରେ ବର୍ଣ୍ଣନା କରାଯାଇଛି । ଏଗୁଡ଼ିକ ଜୀବନ୍ତ ଅନୁଭୂତି ଓ ପ୍ରାଣ-ବିମୋହନ ମାଧୁର୍ଯ୍ୟରେ ଭରପୂର ।

"ଏଇ ତିନୋଟି ଯାକ ପୁସ୍ତକ ଜନସାଧାରଣଂକ ବିଶୁଦ୍ଧ ଅବଧୀ ଭାଷାରେ ଲିଖିତ । ବିବାହ ଗୀତଗୁଡ଼ିକ ପ୍ରଧାନତଃ ଛନ୍ଦୋମୟ ହୋଇଥିବାରୁ ତାହା ବିବାହ ଦୃଶ୍ୟକୁ ସ୍ମରଣ କରାଇଦିଏ, ଯାହାକି ସ୍ତ୍ରୀଲୋକମାନଙ୍କୁ ମୁଗ୍ଧ କରିପାରିବ । ଏଥିରୁ ସୂଚନା ମିଳୁଛି ଯେ ସେ କେବଳ ଜନସାଧାରଣଙ୍କୁ ମାୟା ମମତା ଦେଖାଉ-ନ ଥିଲେ, ଜନସାଧାରଣଙ୍କ ଭାଷାରେ ଜନଜୀବନର ଅନୁଭୂତିକୁ ରୂପ ଦେଇ କିପରି ସୁନ୍ଦର କବିତା ଲେଖା ଯାଇପାରେ ତାହା ଗଭୀର ଭାବରେ ଅନୁଭବ କରିଥିଲେ ।

ମୁକ୍ତକଣ୍ଠରେ, ସଂପୂର୍ଣ୍ଣ ସୂରଦାସଙ୍କ ରୀତିରେ ତୁଳସୀଦାସ

ଯେ ଶିବଙ୍କଭକ୍ତ କୃଷ୍ଣଙ୍କ ଗୁଣ କୀର୍ତ୍ତନ କରିଛନ୍ତି ତାହା ବାସ୍ତବିକ ହୃଦୟର ବିଷୟ । ଶ୍ରୀକୃଷ୍ଣ ଗୀତାବଳୀ ବିଶୁଦ୍ଧ ବ୍ରଜ ଭାଷାରେ ଲିଖିତ । କୃଷ୍ଣଙ୍କ କୀର୍ତ୍ତି-କଳାପର ଲୀଳାଭୂମି ଉତ୍ତର ପ୍ରଦେଶର ପଶ୍ଚିମାଞ୍ଚଳରେ ଏହି ଭାଷା ପ୍ରଚଳିତ । ଏକଷଠିଟି କବିତାର ସମାହାରରେ ରଚିତ ଏହି ଗୀତ-ସଂଗ୍ରହର ଗୀତଗୁଡ଼ିକ ସୂରଦାସଙ୍କ 'ସୁରସାଗର' କବିତା ଭଳି ଉଚ୍ଚକୋଟୀର ।

ଜଣାପଡ଼ୁଛି ଯେ ତତ୍କାଳୀନ ପ୍ରଚଳିତ ଏବଂ ଜନପ୍ରିୟ ଯେତେ ଗୀତ ଲେଖିବାର ବୃତ୍ତି ବା ଛନ୍ଦ, ସବୁଥିରେ ପ୍ରକୃତରେ କବି ହାତ ଦେଇଥିଲେ ଏବଂ ଯେଉଁଥିରେ ସେ ହାତ ଦେଇଛନ୍ତି ତାକୁ ସେ ଅଳଂକୃତ କରିପାରିଛନ୍ତି । ଦୋହା ଗୋଟିଏ ଛନ୍ଦ ଭାବରେ ବହୁ ବୃଦ୍ଧି କବି ଏବଂ ଧର୍ମ-ପ୍ରାଣ ବ୍ୟକ୍ତିମାନଙ୍କ ଦ୍ୱାରା ବ୍ୟବହୃତ ହୋଇ ଆସୁଛି । ତୁଳସୀ ଦାସ ନିଜେ ତାଙ୍କ ଲେଖାର ଅଗ୍ରବର୍ତ୍ତୀ ପଂକ୍ତି-ପୁଞ୍ଜରେ ଭାବଧାରାକୁ କ୍ଳୃପ୍ତ କରିବା ପାଇଁ କିମ୍ବା ଶେଷରୂପ ଦେବା ପାଇଁ ଏହି ଦୋହାକୁ ରାମଚରିତ ମାନସରେ ସଫଳତାର ସହିତ ବ୍ୟବହାର କରିଛନ୍ତି । ସେ ନିଶ୍ଚିତରୂପେ ଦେଖିଛନ୍ତି ଯେ ଏହି ଦୋହା କେତେ ଉପଯୁକ୍ତ ବାହନ, ଯଦ୍ୱାରା ଉଜ୍ଜ୍ୱଳ ଉଲ୍ଲେଖଯୋଗ୍ୟ ସତ୍ୟ କିମ୍ବା ମନ୍ତବ୍ୟ ଗୋଟିଏ କେନ୍ଦ୍ରୀଭୂତ ପରିଧି ଭିତରେ ପ୍ରକାଶ କରାଯାଇ ପାରିବ । ତୁଳସୀ ଦାସଙ୍କ ଦୋହାବଳୀରେ ସ୍ୱଭାବତଃ ଅନେକ ପ୍ରକାର ବିଷୟବସ୍ତୁ ରହିଛି । ଏଗୁଡ଼ିକ ବିଭିନ୍ନ ସମୟରେ ଲିଖିତ ଏବଂ ଗୋଟିଏ ଗୀତ ସଂଗ୍ରହରେ ପ୍ରକାଶ ଲାଭ କରିଛି । ପରି-ପକ୍ୱତା, ଅନ୍ତର୍ଦୃଷ୍ଟି ଏବଂ ସୂକ୍ଷ୍ମ ସମୀକ୍ଷଣ ଯେପରି ଏଥିର ଅଧିକାଂଶ ଗୀତଗୁଡ଼ିକରେ ରହିଛି, ତହିଁରୁ ଅନୁମାନ କରିହୁଏ ଯେ ଏହି ଗୀତ ସଂଗ୍ରହ କବିଙ୍କ ସାହିତ୍ୟିକ ଜୀବନର ଅପେକ୍ଷାକୃତ ପରିପକ୍ୱ

ଅବସ୍ଥାରେ ଲେଖା ଯାଇଥିଲା । ଚଉତିରିଶିଟି ଦୋହା ଏକତ୍ର ସନ୍ନିବିଷ୍ଟ ହୋଇ ଗୋଟିଏ ସଂଗ୍ରହ କରାଯାଇଛି । ତାହା 'ସ୍ୱତନ୍ତ୍ର ଚଉତିସା' ନାମରେ ପରିଚିତ । ଏ ସଂଗ୍ରହର ଦୋହାଗୁଡ଼ିକ ପ୍ରସିଦ୍ଧି ଲାଭ କରିଛି । କାରଣ ଏଥିରେ କବିଙ୍କ ନିଜ ଜୀବନର ଆଦର୍ଶ ଉପସ୍ଥାପିତ କରାଯାଇଛି ଏବଂ ଯେଉଁ ପ୍ରେମ ଦାନ ଖୋଜେନା କି ପ୍ରତିଦାନ ଖୋଜେନା, ଯେଉଁ ପ୍ରେମ ନିତାନ୍ତ ଭାବରେ ସ୍ୱାର୍ଥହୀନ ଏବଂ ଯେଉଁ ପ୍ରେମ ଗୋଟିଏ ଶାଶ୍ୱତ ସୁଦୃଢ଼ ନିଶାଣ ଯାହାକୁ ଝଡ଼ ତୋଫାନ ଟଳାଇ ପାରେନା, ସେଇ ପ୍ରେମର ଦର୍ଶନ ଏଥିରେ ଉପସ୍ଥାପନା କରାଯାଇଛି । ଏଇ ଦୋହାବଳୀରେ ଭାରତର ଜ୍ଞାନ ବହୁ ପରିମାଣରେ ରକ୍ଷିତ ଯାହା କି ସୂକ୍ଷ୍ମ ଭାବରେ ପରୀକ୍ଷା କରା-ଯାଇଥିବା ସମାଜ, ମଣିଷ ଏବଂ ତାର କାର୍ଯ୍ୟାବଳୀର ମତଗତ ଉପରେ ପ୍ରତିଷ୍ଠିତ ।

'ବରବୈ' ନାମକ ଆଉ ଗୋଟିଏ ବୃତ୍ତ ବା ଛନ୍ଦ କବିଙ୍କ ତୁଟିକୁ ପୂର୍ଣ୍ଣ କରି ପାରିଛି । ଏଇ ଛନ୍ଦ ବ୍ୟବହାର କରି କବି ବରବୈ ରାମାୟଣ ନାମକ ଆଉ ଗୋଟିଏ ରାମାୟଣ ଲେଖିଚନ୍ତି । ବର୍ତ୍ତମାନ ୬୯ଟି ଗୀତସଂବଳିତ ବରବୈ ରାମାୟଣର ଗୋଟିଏ ସଂସ୍କରଣ ମିଳୁଛି । କିନ୍ତୁ କଥିତ ଅଛି, ମୂଳ ବରବୈ ରାମାୟଣରେ ବହୁତ ଗୀତ ଥିଲା । ତୁଳସୀଦାସଙ୍କ ସମସାମୟିକ ଅବଦୁର ରହିମ ଖାନ-ଇ-ଖାନାଙ୍କ ବ୍ୟତୀତ ଯେଉଁ ବରବୈ ଛନ୍ଦ କ୍ୱଚିତ୍ କେହି ବ୍ୟବହାର କରିବା ଦେଖାଯାଏ, ସେଇ ଛନ୍ଦ ଏବଂ ବିଶୁଦ୍ଧ ଅବଧୀ ଭାଷା ହିଁ ଉଭୟ କବିଙ୍କୁ ବିଶେଷ ଭାବରେ ଆକୃଷ୍ଟ କରିଥିଲା । ଏଇ ଛନ୍ଦ ଅତି ସୂକ୍ଷ୍ମ ଭାବରେ ପରିକଳ୍ପିତ । ଅଳ୍ପ ବାକ୍ୟାଂଶ ଏବଂ କେନ୍ଦ୍ରୀଭୂତ ଭାବଧାରା ଏଥିରେ ରହିପାରେ ଏବଂ ଅନୁଭୂତିର ସୂକ୍ଷ୍ମତାର ରୂପାୟ

ଗଭୀର ଭାବରେ ଉଦ୍‌ବୁଦ୍ଧ କରିପାରେ । ଏହାର ମନ୍ଥର ଗତିରେ ମାଧୁର୍ଯ୍ୟ ପରିଲକ୍ଷିତ ହୁଏ ।

କବିତାବଳୀରେ ତୁଳସୀ ଦାସଙ୍କ ଭାଷା ଓ ଶୈଳୀର ବିପୁଳ ଆକର୍ଷଣ ଦେଖାଯାଏ । ତାର ପ୍ରଧାନ କାରଣ ଭାଷାରେ ସରଳତା ଓ ଯଥାର୍ଥତା ରହିଛି ଏବଂ ପ୍ରକାଶଭଙ୍ଗୀ ସିଧା ଓ ସଳଖ । ସେ କହନ୍ତି, "ସଂସ୍କୃତରେ ଜଣେ ଲେଖୁ କିମ୍ବା ଜନସାଧାରଣଙ୍କ ଭାଷାରେ ଲେଖୁ ସେଥିରେ କଣ ଯାଏ ଆସେ ? ସବୁଠୁ ବଡ଼ କଥା ହେଉଛି ପ୍ରକୃତ ପ୍ରେମ ।" ତାଙ୍କର ଗଭୀର ବିଶ୍ୱାସ ଯେ କବିର ଭାଷାକୁ ଏବଂ ପ୍ରକାଶଭଙ୍ଗୀକୁ ପ୍ରାଣବନ୍ତ ଅନୁଭୂତି ହିଁ ରୂପ ଦିଏ, କେବଳ କେତେଗୁଡ଼ିଏ ଶବ୍ଦ ନୁହେଁ । ବିଶୁଦ୍ଧ ଅବଧୀରେ ଲିଖିତ ତାଙ୍କର ନିମ୍ନତର ଲେଖାଠାରୁ ମାର୍ଜିତ, ଉନ୍ନତ ଏବଂ ମିଶ୍ର ଭାଷାରେ ଲିଖିତ ତାଙ୍କର ଉଚ୍ଚତର ଲେଖା 'ମାନସ' 'କବିତାବଳୀ' 'ବିନୟ ପତ୍ରିକା' ପର୍ଯ୍ୟନ୍ତ ତାଙ୍କର ନିଜ ଭାଷା ଓ ପ୍ରକାଶଭଙ୍ଗୀ ଧୀର ମନ୍ଥର ଭାବରେ ଗୋଟିଏ ବିବର୍ତ୍ତନର ପ୍ରଣାଳୀ ଦେଇ ଗତି କରିଛି । ସଂପୂର୍ଣ୍ଣ ସହଜରେ ସ୍ୱଚ୍ଛନ୍ଦରେ କୌଣସି ପ୍ରତିବନ୍ଧକ ଅନୁଭବ ନ କରି ଯେଉଁ ଭାଷା ସେ ବ୍ୟବହାର କରିଛନ୍ତି, ତାକୁ ଏଠାରେ ମିଶ୍ରଭାଷା କୁହାଯାଇଛି । ଏହାଦ୍ୱାରା କେବଳ ଅବଧୀ, ଭୋଜପୁରୀ, ବୁନ୍ଦେଲି, ବ୍ରଜଭାଷା ଏବଂ ଖଡ଼ୀବୋଲି ଭାଷାରୁ ଯେ ଶବ୍ଦ ଗ୍ରହଣ କରାଯାଇ ପାରିବ ତା ନୁହେଁ, ସଂସ୍କୃତ, ଆରବିକ୍, ପର୍ସିଆନ ଭାଷାରୁ ମଧ୍ୟ ଶବ୍ଦ ଗ୍ରହଣ କରାଯାଇ ପାରିବ । ତାଙ୍କ ଭାଷାର ଏଇ ନମନୀୟ ସୌନ୍ଦର୍ଯ୍ୟ ହିଁ ଆଶ୍ଚର୍ଯ୍ୟଜନକ । ମନେହୁଏ ବିଷୟବସ୍ତୁ ଅନୁସାରେ ତାଙ୍କ ଭାଷା ବି ଭିନ୍ନ ହୁଏ । 'ମାନସ'ରେ ଏବଂ 'ବାରବୈ' ରାମାୟଣରେ ସଂପୂର୍ଣ୍ଣ ଉନ୍ନତ ଓ ପରିମାର୍ଜିତ ଅବଧୀଭାଷା, 'କୃଷ୍ଣ ଗୀତାବଳୀ' 'କବିତା-

ବଳୀ' ଓ 'ବିନୟପତ୍ରିକା'ରେ, ବ୍ରଜଭାଷା, ପ୍ରାର୍ଥନା, ଆବାହନ ଇତ୍ୟାଦିରେ ସଂସ୍କୃତ ସଂଯୁକ୍ତ ପଂକ୍ତିମାନ ଦେଖାଯାଏ । ବିଷୟ ସଙ୍ଗତି ପାଇଁ ଲୋଡ଼ାହେଲେ ପାରସିକର ଏବଂ ଆରବିକ ଶବ୍ଦ ମଧ୍ୟ ଅଣାଯାଏ । ଲେଖାର ମୌଳିକ ଆବଶ୍ୟକତା ହେଉଛି ସ୍ୱାଭାବିକତା, ସରଳତା ଏବଂ ଉପକାରିତା । ଏଥିପାଇଁ ସେ ଯେତେ ଧ୍ୟାନ ଦେଉ-ଥିଲେ ଅନ୍ୟ କୌଣସି ପାଇଁ ସେତେ ସତର୍କ ନଥିଲେ । ପ୍ରକାଶ-ଭଙ୍ଗୀ କପରି ବଳିଷ୍ଠ, ନୂତନ ଏବଂ ଯଥାର୍ଥ ହେବ, ସେଥିପାଇଁ ଆବଶ୍ୟକ ସ୍ଥଳେ ସେ ବିଶୁଦ୍ଧବାଦୀ ସାହିତ୍ୟକମାନଙ୍କର ନିୟମ କାନୁନ୍‌କୁ ଅଁଡ଼େଇ ଦେବା ପାଇଁ କୁଣ୍ଠିତ ହୋଇ ନାହାନ୍ତି । ସ୍ମୃତିଶୀଳ ପରମ୍ପରା ଏବଂ ନିୟମ କାନୁନର ଅନୁଗମନକାରୀ ଲେଖକମାନଙ୍କ ଅପେକ୍ଷା ଏ ସଂପର୍କରେ ସେ ନିଜ ଭାଷା ଓ ରୁଚି ପ୍ରୟୋଗ ଗୁଡ଼ିକର ଜଣେ ଉତ୍କୃଷ୍ଟତର ସ୍ରଷ୍ଟା ଓ ମୌଳିକ ଶିଳ୍ପୀ । ସେ ଟିକିଏ ଉପମା ଓ ଅଳଂକାର ପ୍ରିୟ ହୋଇପାରନ୍ତି । କିନ୍ତୁ ତାଙ୍କର ଏ ଉପମା ଅଳଂକାର ପ୍ରୀତି ବାହ୍ୟାଡ଼ମ୍ବର ନୁହେଁ । ସେ ଜାଣନ୍ତି ଯେ ଏଇ ଉପାୟ ଦ୍ୱାରା ତାଂକର ପାଠକମାନେ ବିଷୟକୁ ଭଲରୂପେ ହୃଦ୍‌ବୋଧ କରିପାରିବେ ।

ଫଳତଃ ସେ ତାଂକ ସଂକଳ୍ପ ପ୍ରତି ଠିକ୍ ରହିଚନ୍ତି, କାରଣ ତାଂକର କବିତା ବିଶୁଦ୍ଧ ସାହିତ୍ୟବାଦୀ ବା ପଣ୍ଡିତମ୍ମନ୍ୟ ବ୍ୟକ୍ତିଙ୍କୁ ସୁଖ ନଲଗିପାରେ, କିନ୍ତୁ ଜନସାଧାରଣଂକ ହୃଦୟକୁ ସ୍ପର୍ଶ କରିବ । କାରଣ ଏହା ରାମଭକ୍ତିରେ ପରିପୂର୍ଣ୍ଣ ।

# ୪. ଶେଷ ଜୀବନ

'କବିତାବଳୀ' ତୁଳସୀଦାସଙ୍କ ନିଜ ଜୀବନ ଏବଂ ତତ୍କାଳୀନ ସମାଜର ଜନସାଧାରଣଙ୍କ ଜୀବନ ସଂପର୍କରେ ମୂଲ୍ୟବାନ ଉପାଦାନ ଆମ୍ଭମାନଙ୍କୁ ଯୋଗାଇଦିଏ । ହନୁମାନ ବାହୁକକୁ ମିଶାଇ ଏଥିରେ ୩୬୨ଟି ଚତୁଷ୍ପଦୀ ରହିଛି । ସବୁଗୁଡ଼ିକ ପ୍ରାୟ କବିତା ଏବଂ ଛନ୍ଦସଂଯନ୍ତ । କବି ଏହି ଗ୍ରନ୍ଥର ଆଦ୍ୟ ଭାଗରେ ରାମ କାହାଣୀର ବିଭିନ୍ନ ଅବସ୍ଥାର ଅବିସ୍ମରଣୀୟ ଘଟଣା ସମ୍ବଳିତ ଚିତ୍ର କେତେଗୁଡ଼ିଏ ଅତି ମାଧୁର୍ଯ୍ୟମୟ ଚତୁଷ୍ପଦୀ ଭିତରେ ପ୍ରକାଶ କରିଛନ୍ତି । ଏଗୁଡ଼ିକ ଭାବାର୍ଥ ପାଇଁ ଯେତିକି ପ୍ରସିଦ୍ଧି ଲଭି କରିଛନ୍ତି, ସାଙ୍ଗୀତିକ ତାଳ-ମାନ, ପଂକ୍ତି ଗୁଡ଼ିକର ଗଠନବିଧି, ସହଜାତ ଗୀତି କବିତାର ମାଧୁର୍ଯ୍ୟ ପାଇଁ ସେତିକି ପ୍ରସିଦ୍ଧି ଲଭି କରିଛନ୍ତି । ଶେଷ ସର୍ଗ ଉତ୍ତର କାଣ୍ଡ ଯେତେବେଳେ ପହଂଚିଯାଏ ସେତେବେଳେ ରାମଚରିତ ସରିଆସେ । କବି ତା ପରେ ନିଜ କଥା କହିବାକୁ ଆରମ୍ଭ କରିଛନ୍ତି, ଯଥା—ତାଙ୍କର ଆଦ୍ୟଜୀବନ, ବଂଚି ରହିବା ପାଇଁ ସଂଗ୍ରାମ, ଖ୍ୟାତି ବୃଦ୍ଧି, ରାମଙ୍କଠାରେ ଆତ୍ମସମର୍ପଣ । ଗ୍ରନ୍ଥର ଅବଶିଷ୍ଟ ଅଂଶ ରାମ କାହାଣୀ ନୁହେ, ତୁଳସୀ ଦାସଙ୍କର ନିଜ କାହାଣୀ ମାତ୍ର । ବାର୍ଦ୍ଧକ୍ୟର ସୁପ୍ରତିଷ୍ଠିତ ଭୂମି ଉପରେ ଠିଆ ହୋଇ, ସେ ନିଜ ଜୀବନର ସମୀକ୍ଷଣ କରିଛନ୍ତି ଏବଂ ନିଜ ବିଶ୍ୱାସର ବନ୍ଧୁ ଧାରା ନିଷ୍କପଟତା ସହିତ ଲିପିବଦ୍ଧ କରିଛନ୍ତି । ସେ ଅନୁଭବ କରିପାରିଛନ୍ତି ମନୁଷ୍ୟ କେବଳ ଏକାକୀ ନୁହେ; ରାମଙ୍କ ସହିତ ମିଶି ରହିଲେ

ଜୀବନର ଅସୀମ ସମ୍ଭାବନା ରହିଛି । ଦାରିଦ୍ର୍ୟ ଏବଂ ପ୍ରାଚୁର୍ଯ୍ୟ ଏ ଦୁଇଟିର ବହୁ ଊର୍ଦ୍ଧ୍ୱରେ । ଭଗବାନଙ୍କ ଭିତରେ ବାସ କରିବା ହିଁ ଜୀବନରେ ପରିପୂର୍ଣ୍ଣତା ।”

ଏହି ଚତୁଷ୍ପଦୀ ମାନଙ୍କରେ ଗଭୀର ସାମାଜିକ କର୍ତ୍ତବ୍ୟ ଜ୍ଞାନ ପରିଲକ୍ଷିତ ହୁଏ । “ଦାରିଦ୍ର୍ୟର ରାବଣ ସମଗ୍ର ପୃଥିବୀକୁ ହାତ ମୁଠାରେ ଧରିଥିବାର” ଦୃଶ୍ୟରେ କବି ଅଭିଭୂତ ହୋଇଯାଇଚନ୍ତି । ନିତାନ୍ତ ଦୁଃଖ ଓ ଅଭାବ ଭିତରେ ଲୋକମାନେ କପରି ପଚରି ପଚରି ହେଉଚନ୍ତି ତାର ଗୋଟିଏ ଜୀବନ୍ତ ଚିତ୍ର ସେ ଅଙ୍କନ କରିଚନ୍ତି— “ଆମେ ସବୁ କୁଆଡ଼େ ଯିବା ? ଆମେମାନେ କଣ କରିବା ?” କାରଣ କୃଷକମାନଙ୍କର କୃଷିବାସ କରିବାକୁ ଜମିବାଡ଼ ନାହିଁ, ଭିକାରିମାନେ ଭିକ ପାଉ ନାହାନ୍ତି । ବ୍ୟବସାୟୀମାନଙ୍କର ବ୍ୟବସାୟ ନାହିଁ, ଚାକିରିଆ ଲୋକମାନେ ଚାକିରି ପାଉ ନାହାନ୍ତି । ସେ ଲକ୍ଷ୍ୟ କରିଚନ୍ତି ଯେ ସମାଜର ସବୁ ଶ୍ରେଣୀର ଲୋକେ ବଂଚି ରହିବା ପାଇଁ, ନାନା ସନ୍ଦେହଜନକ ନୀତିହୀନ ଉପାୟ ଅବଲମ୍ବନ କରୁଚନ୍ତି ଏବଂ ସେ ଏହି ସିଦ୍ଧାନ୍ତରେ ପଂହଚି କହିଚନ୍ତି—“କ୍ଷୁଧାର ଅଗ୍ନିଠୁ ବଳି ଏଠେ ଅଧିକତର ମାରାତ୍ମକ ଅଗ୍ନି କେଉଁଠି ନାହିଁ ।” ଶାସ୍ତ୍ର ପ୍ରଦର୍ଶିତ ସତ୍‌ପଥ ଛାଡ଼ି ଲୋକମାନେ ଅସତ୍‌ପଥଗାମୀ ହେବାରୁ, ବହୁତ ପ୍ରକାରର ନୂଆ ମନଗଢ଼ା ବିଶ୍ୱାସ ସବୁ କ୍ଷେତ୍ରକୁ ଆବୋରି-ଥିବାରୁ ସେ ବଡ଼ ଅସ୍ୱସ୍ତି ବୋଧ କରିଚନ୍ତି । ତାଙ୍କ ଚତୁର୍ଦ୍ଦିଗରେ ଦୁଃଖ, ପାପ, ଦାରିଦ୍ର୍ୟ ସହ ତଥାକଥିତ ଧାର୍ମିକ ବ୍ୟକ୍ତିମାନେ ଲୋକମାନଙ୍କ ମନରେ ଧର୍ମ ସମ୍ପର୍କରେ ନାନା ଭ୍ରାନ୍ତି ସୃଷ୍ଟି କରୁ-ଥିବାର ସେ ଦେଖିବାକୁ ପାଇଛନ୍ତି । ଏଥିରୁ ହିଁ ସେ ଅନୁଭବ କରିଛନ୍ତି ଯେ ପ୍ରକୃତରେ ମନୁଷ୍ୟର ସେବା କରିବାଠାରୁ ଉଚ୍ଚତର

ଧର୍ମ ନାହିଁ ।

'ବିନୟ ପତ୍ରିକା' ରାମଚରିତମାନସର ସମଶ୍ରେଣୀୟ ହେବ ଏବଂ ତୁଳସୀଦାସଙ୍କର ଏହା ମଧ୍ୟ ଅନ୍ୟତମ ଉଚ୍ଚକୋଟୀର କାବ୍ୟ-ଗୌରବ । ଏହା କେତେଗୁଡ଼ିଏ ଗୀତି-କବିତାର ସଂଗ୍ରହ । ମହା-କାବ୍ୟରେ କବିଙ୍କୁ ଅନ୍ୟମାନଙ୍କର କଥା ଓ କାର୍ଯ୍ୟର ମାଧ୍ୟମରେ ତାଙ୍କର ରାମଭକ୍ତି ପ୍ରକାଶ କରିବାକୁ ପଡ଼ିଥିଲା । ତେଣୁ ସଫଳ ଚରିତ୍ର ସୃଷ୍ଟି ତାଙ୍କର ପ୍ରଥମ ଲକ୍ଷ୍ୟ ହୋଇଥିଲା । ସାଧାରଣ ପାଠକ କବିଙ୍କର ରାମଭକ୍ତିକୁ ଗୋଟିଏ ଚଷମା କାଚ ଭିତର ଦେଇ ଅନୁଭବ କଲା ଭଳି ଭାବରେ ଦେଖିପାରୁଥିଲେ । ବିନୟ ପତ୍ରିକା, ପ୍ରକୃତ ଅର୍ଥରେ ଦେଖିବାକୁ ଗଲେ, ଗୋଟିଏ ଆଧ୍ୟାତ୍ମିକ ଜୀବନଚରିତ । କବି ଓ ସ୍ରଷ୍ଟା ଉଭୟ ଯେପରି ପରସ୍ପରର ସମ୍ମୁଖରେ ଦଣ୍ଡାୟମାନ । ପ୍ରାଣ-ଭରା ପ୍ରୀତି ଏବଂ ଗଭୀର ଅନୁଭୂତି ସହିତ ସେଇ ପରମବ୍ରହ୍ମଙ୍କୁ ଆବିଷ୍କାର କରିବା ପାଇଁ କବିଙ୍କର ସାଧନା ଏବଂ ପ୍ରେମ ବା ଭକ୍ତି ପଥର ପ୍ରକୃତ ସ୍ୱରୂପ ଏସବୁ ସେଥିରେ ଲିପିବଦ୍ଧ ହୋଇଛି । ଏତଦ୍ୱାରା ଅବଶ୍ୟ ଗୋଟିଏ ଭ୍ରାନ୍ତ ଧାରଣା ସୃଷ୍ଟି ହୋଇପାରେ ଯେ, ପଦ୍ୟାକାରରେ ଏହା ଗୋଟିଏ ଦାର୍ଶନିକ ଆଲୋଚନା ଗ୍ରନ୍ଥ । କବିଙ୍କର ଆନ୍ତରିକ ପ୍ରବେଶ, ଅକୃତ୍ରିମ ଅନୁଭୂତି, ଗୀତି-କବିତାର ଗୁଣାବଳୀ ହେତୁ (ବିନୟ ପତ୍ରିକା) ସମସ୍ତ ସାହିତ୍ୟ ଭିତରେ ଗୋଟିଏ ସୁନ୍ଦରତମ ଗୀତି କବିତା ଭାବରେ ଚିହ୍ନାଯାଇପାରେ ।

ଗୋଟିଏ କାହାଣୀ ପ୍ରଚଳିତ ଅଛି ଯେ କଳି ଯେତେବେଳେ ଦେଖିଲା ତୁଳସୀଦାସ ଏବଂ ତାଙ୍କ ଗ୍ରନ୍ଥାବଳୀ ଲୋକମାନଙ୍କୁ ତା'ଠାରୁ ଦୂରେଇ ନେଇ ଯାଉଛନ୍ତି ଏବଂ ତା' ନିଜ ରାଜ୍ୟ ଭିତରେ ଅନଧିକାର ପ୍ରବେଶ କରୁଛନ୍ତି, ସେ କବିଙ୍କୁ ତାର ଭୟଙ୍କର

ପ୍ରତିଫଳ ଦେବାକୁ ତତ୍ପରଥିଲେ । ମଙ୍ଗଳମୟ ଦେବତା ହନୁମାନ ଏ ସମ୍ପର୍କରେ ଗୋଟିଏ ଆବେଦନପତ୍ର ରାମଚନ୍ଦ୍ରଙ୍କ ଦରବାରରେ ଦାଖଲ କରିବାକୁ କବିଙ୍କୁ ଉପଦେଶ ଦେଲେ । ଗୀତି ସଂଗ୍ରହର ନାମ ଏବଂ ତାର ଶେଷ କବିତାଗୁଡ଼ିକ ଦ୍ୱାରା ଗଳ୍ପଟି ସୁନ୍ଦର ଅଳଂକୃତ ହୋଇପାରିଛି । ଗଳ୍ପଟି ବ୍ୟକ୍ତିଗତ, ଯେଉଁ ଅନୁଭୂତିଦ୍ୱାରା ଅନୁପ୍ରାଣିତ ହୋଇ କବି ତାଙ୍କ ପ୍ରଭୁଙ୍କ ପାଦତଳେ ନିଜ ହୃଦୟ ପୂର୍ଣ୍ଣଭାବରେ ଖୋଲିଦେଇଛନ୍ତି, ତାହା ଗୀତିଗୁଡ଼ିକୁ ରଚନା କରିବାରେ ଏବଂ ଉପଯୁକ୍ତ ଭକ୍ତିର ମଧୁଗନ୍ଧ ବାଢ଼ିବାରେ ସହାୟତା କରିଛି । କବିଙ୍କର ମଣିଷ ସହିତ ସଇତାନର ସଂଗ୍ରାମ, ଈଶ୍ୱର ରହସ୍ୟ ସମାଧାନ ପାଇଁ ପ୍ରଚେଷ୍ଟା, ଆଲୋକ, ଶାନ୍ତି ଓ ଆନନ୍ଦର ଉତ୍ପତ୍ତି ସ୍ଥଳର ସ୍ପର୍ଶ ପାଇଁ ଉତ୍କଣ୍ଠା—ଏ ସକଳର ପ୍ରତିଟି କବିତା ଗୋଟିଏ ଗୋଟିଏ ମାନବିକ ଅଭିଲେଖ । ସେ ଯେଉଁ ଉପସଂହାରରେ ପହଞ୍ଚନ୍ତି, ତାହା ତାଂକର ପରିପକ୍ୱ ବିଶ୍ୱାସ ଏବଂ ତାଂକ ଅନ୍ତଃସ୍ଥଳର ବ୍ୟକ୍ତିତ୍ୱ ସଂପର୍କରେ ଆମକୁ ମୂଲ୍ୟବାନ୍ ଇଙ୍ଗିତ ଦିଏ । ସେ ଦେଖି ପାରିଚନ୍ତି ସର୍ବତ୍ର ବ୍ୟାପ୍ତ ଗୋଟିଏ ଐଶ୍ୱରୀଶକ୍ତି "ଆଦ୍ୟ, ମଧ୍ୟ, ଶେଷ" ସବୁ ସମୟରେ ରହିଛି । ଏହାର ସ୍ପର୍ଶଲାଭ ମଣିଷଜୀବନର ଶ୍ରେଷ୍ଠତମ ସୁଯୋଗ । ସାମାନ୍ୟ ବୌଦ୍ଧିକ ଆଲୋଚନାର ଏଠି କିଛି ଆବଶ୍ୟକତା ନାହିଁ । ରାତିରେ ଗୋଟିଏ ଆବଦ୍ଧ କୋଠରିର ଅଂଧକାର ଭିତରେ କେବଳ ବୁଡ଼ିରହି, ଗୋଟିଏ ଦୀପ ଏବଂ ତାର ଆଲୋକ ସମ୍ବନ୍ଧରେ ଜଣେ ଲୋକ ଯେବେ ଅସରନ୍ତି କଥାଭାଷା କରେ, ସେ ଆଲୋକ ଦେଖିବା ପାଇଁ ସାହାଯ୍ୟ ପାଇ ପାରିବ ନାହିଁ । ମଣିଷ ଯେବେ କ୍ରୋଧ, ଲୋଭ, ଅଜ୍ଞାନତାକୁ ଦୂର କରି ପାରନ୍ତା, ସେ ଆଲୋକ ଦେଖି ପାରନ୍ତା । କିନ୍ତୁ ସେଗୁଡ଼ିକୁ ଜୟ

କରିବା ଏତେ ସହଜ ନୁହେଁ ।

ମୁନିଋଷି ଜୀବନ, ତପସ୍ୟା, ବସ୍ତୁତଃଭାବରେ ଧର୍ମ ସମ୍ପର୍କୀୟ ମେଳା ଉତ୍ସବ—ଏ ସବୁ ପ୍ରସ୍ତାବିତ ପଥ ହୋଇପାରେ; କିନ୍ତୁ ଏହା ଧୂଳିମାଟିରେ ପ୍ରସ୍ତୁତ ଗୋଟିଏ ଦଉଡ଼ିରେ ହାତୀକୁ ବାନ୍ଧିଲା ପରି ନିରର୍ଥକ । ଯେଉଁ ସ୍ରଷ୍ଟାଙ୍କ ହୃଦୟ ଧ୍ୟାନ ଦୁର୍ବଳ ଏବଂ ପାପୀ-ତାପୀଙ୍କ ପାଇଁ କରୁଣାପୂର୍ଣ୍ଣ, ତାଙ୍କର ଇଚ୍ଛାଶକ୍ତି ପ୍ରତି ପ୍ରେମ, ବିଶ୍ୱାସ ଏବଂ ଆତ୍ମସମର୍ପଣ କରିବା ହିଁ ଉପଯୁକ୍ତ ପଥ ।

ସ୍ୱତଃସ୍ଫୂର୍ତ୍ତ ଅନୁଭୂତି, ଗଭୀର ବ୍ୟକ୍ତିଗତ ଆତ୍ମପ୍ରକାଶ, ଚିନ୍ତାଧାରାର କେନ୍ଦ୍ରୀକରଣ ଓ ଐକ୍ୟ ଇତ୍ୟାଦି ଯାହା ସବୁ ଶ୍ରେଷ୍ଠ ଗୀତିକବିତାରେ ଦେଖିବାର କଥା ସେ ସବୁ ସେଇ ଆଧ୍ୟାତ୍ମିକ ଆତ୍ମସମର୍ପଣରୂପ ସଙ୍ଗୀତଗୁଡ଼ିକରେ ପ୍ରକାଶ ଲଭ କରିଛି । ବିନୟ ପତ୍ରିକାରେ ଏଗୁଡ଼ିକ ଏକତ୍ର ସଂଗୃହୀତ କରାଯାଇଛି । କବିଙ୍କର ବିଶ୍ୱାସଯୋଗ୍ୟ ବାଣୀ ଏହାଠାରୁ ଅଧିକତର ପ୍ରତ୍ୟକ୍ଷଭାବରେ ଏବଂ ପରିସ୍ଫୁଟଭାବରେ ତାଙ୍କର ଅନ୍ୟ କୌଣସି ଗ୍ରନ୍ଥରେ ଶୁଣିବାକୁ ମିଳେନାହିଁ ।

ଦୁଇଟି ବିପଦ କବିଙ୍କ ବାର୍ଦ୍ଧକ୍ୟରେ କାଶୀକୁ ଗ୍ରାସ କରିଥିଲା । ତାହା ଗଭୀରଭାବରେ କବିଙ୍କୁ ସ୍ପର୍ଶ କରିଥିଲା । ମୋଗଲ ସମ୍ରାଟ୍ ସାଜାହାନଙ୍କ ରାଜତ୍ୱକାଳରେ ଦୁର୍ଭିକ୍ଷ ପଡ଼ିଥିଲା ଏବଂ ପ୍ଲେଗ୍ ବ୍ୟାପିଥିଲା । ସମସାମୟିକ ଉଲ୍ଲେଖମାନଙ୍କରୁ ଜଣାପଡ଼େ ପ୍ରାୟ ୧୬୫୬ ଖ୍ରୀଷ୍ଟାବ୍ଦରେ ଆଗ୍ରାରେ ପ୍ଲେଗ୍ ବ୍ୟାପିଥିଲା । କବି ଯେଉଁ ଭାବରେ ଏଇ ସଂକ୍ରାମକ ରୋଗକୁ ଜ୍ୟୋତିଷ ଗଣନା ଅନୁସାରେ ମୀନ ଶନି ନାମକ ଗୋଟିଏ ଖରାପ କାଳ ସହିତ ସଂଯୁକ୍ତ କରିଛନ୍ତି, ତହିଁରୁ ଜଣାପଡ଼େ ଯେ, ଆଗ କାଶୀରେ ଏ ରୋଗ ଦେଖାଦେଇ-

ଥିଲା । ଏଥିରେ ଯେଉଁ ଧ୍ୱଂସକ୍ରିୟା ଘଟିଗଲା ସେଇ ଉଦ୍ଦେଶ୍ୟରେ କବି ଦକ୍ଷତାର ସହ ଯେଉଁ ଚିତ୍ର ଠିଆ କରାଇଚନ୍ତି ତହିଁରେ ତାଙ୍କ ନାଗରିକ ବନ୍ଧୁମାନଙ୍କର ଗମ୍ଭୀର ଶୋଚନୀୟ ଅବସ୍ଥା ବର୍ଣ୍ଣନା କରାଯାଇଚି । ମୃତ ଓ ମୁମୂର୍ଷୁ ନଗରୀରେ ପରିଣତ ହୋଇଥିବା ଶଙ୍କରନଗରୀ କାଶୀକୁ ରକ୍ଷା କରିବା ପାଇଁ ସେ ତାଙ୍କର ବହୁ ଦେବତାମାନଙ୍କୁ ପ୍ରାର୍ଥନା କରିଛନ୍ତି ।

ଏହି ସମୟରେ ତୁଳସୀଦାସ ଗୋଟିଏ ଯନ୍ତ୍ରଣାଦାୟକ ରୋଗରେ ନିଜେ ବିଶେଷ ଭାବରେ ଆକ୍ରାନ୍ତ ହୋଇଥିଲେ । କେତେକ ଲେଖକ ଅନୁମାନ କରନ୍ତି ଯେ, ତାଙ୍କୁ ପ୍ଲେଗ ରୋଗ ଧରିଥିଲା ଏବଂ ଏଇ ରୋଗ ଧଇଲେ ତାହାର ଫଳ ଯାହା ହୁଏ ତହିଁରୁ ତାଙ୍କର ମୃତ୍ୟୁ ମଧ୍ୟ ନିର୍ଣ୍ଣୟ କରାଯାଇପାରନ୍ତା । 'ହନୁମାନ-ବାହୁକ'ରେ ଏବଂ ଅନ୍ୟତ୍ର ସେ ତାଙ୍କ ଶାରୀରିକ ଦୁଃଖଯନ୍ତ୍ରଣା କଥା ଉଲ୍ଲେଖ କରିଚନ୍ତି ଏବଂ ତାଙ୍କର ପ୍ରିୟ ବହୁ ଦେବତାଙ୍କୁ ଜୀବନ ରକ୍ଷା ଲାଗି ପ୍ରାର୍ଥନା କରିଛନ୍ତି । କିନ୍ତୁ ତହିଁରେ କିଛି ଉଲ୍ଲେଖ ନାହିଁ ଯଦ୍ଦ୍ୱାରା ଆମେ ଜାଣିପାରିବା ସେ କି ରୋଗରେ ପଡ଼ିଥିଲେ ଏବଂ ତାଙ୍କର ପରଲୋକ ହେବାର ସଠିକ କାରଣ କଣ ଥିଲା । ଅନ୍ୟ ପକ୍ଷରେ ଦେଖିବାକୁ ଗଲେ ପରିଷ୍କାରରୂପେ ସୂଚନା ମିଳୁଚି ଯେ, ସେ ଥରେ ଅନ୍ତତଃ ରୋଗରେ ପଡ଼ିଥିଲେ; କିନ୍ତୁ ତାଙ୍କର ଇଷ୍ଟଦେବତା ହନୁମାନଙ୍କ ଦୟାରୁ ସେ ରକ୍ଷା ପାଇ-ଗଲେ । ସେ ଆଉ ଗୋଟିଏ ରୋଗ କଥା ପ୍ରକାଶ କରିଚନ୍ତି । ଥରେ ତାଙ୍କ ବାହୁରେ ପୀଡ଼ା ହୋଇଥିଲା । ତାହା ଦେହର ସମସ୍ତ ଅଙ୍ଗ-ପ୍ରତ୍ୟଙ୍ଗକୁ ବ୍ୟାପିଗଲା । ମନେହୁଏ ଏଇ ରୋଗ କବିଙ୍କୁ ଅସରନ୍ତି ଯନ୍ତ୍ରଣା ଦେଇଥିଲା । 'ହନୁମାନବାହୁକ'ର କେତୁଟି ଗୁଡ଼ିଏ ଚଉପଦୀ

କବିତାରେ ସେ ବର୍ଣ୍ଣନା କରିଚନ୍ତି କପରି ସେ ସବୁ ଦିଅଁ-ଦେବତାଙ୍କୁ ପାଳିକରି ପ୍ରାର୍ଥନା କରୁଥିଲେ ଏବଂ ଅବଶେଷରେ ଯାହା ଦ୍ୱେଷିବ ତାହା ପାଇବ—ଏଇ ବାଣୀ ହୃଦୟଙ୍ଗମ କରି ନୀରବ ରହିଲେ । ଅନ୍ତର ଭିତରକୁ ଆଲୋକପାତ କରି ଦେଖିବାଟା ଥିବ କବିଙ୍କର ଗୋଟିଏ ପ୍ରଧାନ ଗୁଣ । ଏଥିପାଇଁ ଆମେ ଯେବେ ସିଦ୍ଧାନ୍ତ କରୁ ଯେ ତାଙ୍କର ପ୍ରାର୍ଥନା କେହି ଶୁଣିଲେନି; ସେ ସମସ୍ତ ବିଶ୍ୱାସ ଈଶ୍ୱରଙ୍କ ଉପରୁ ହରାଇ ବସିଲେ, କମ୍ପା ଫ୍ଲେଗରେ ମଜିଗଲେ, ତେବେ ଆମର ସିଦ୍ଧାନ୍ତ ସଠିକ ହେବ ନାହିଁ ।

ହେଲେ, ପ୍ରକୃତରେ ସେ ତାଙ୍କ ଦୀର୍ଘଜୀବନର ଶେଷ ପାଦକୁ ଶାରୀରିକ ଦୁର୍ବଳତାରେ ଅବସନ୍ନ ହୋଇପଡ଼ିଲେ । ସେ ବିଚାରି-ଥିଲେ, ଆଉ କେତେ ଦିନ ବଞ୍ଚିରହିବା ପାଇଁ । ଈଶ୍ୱର ଯେବେ ଇଚ୍ଛା କରନ୍ତି ତାଙ୍କ "ଦେହପୀଡ଼ା ମୁକ୍ତ ହୋଇଯିବ ।"

ବହୁବର୍ଷ ଓ ବହୁ ଗୌରବ, ସମ୍ମାନ ଓ ମନୋବଳର ପ୍ରାଚୁର୍ଯ୍ୟ ଘେନି ସେ ଜୀବନଯାପନ କରି ରହିଥିଲେ । ବାର୍ଦ୍ଧକ୍ୟର ଧ୍ୱଂସ-କାରିଣୀ ଶକ୍ତି ଯେତେବେଳେ ତାଙ୍କର ଶରୀରକୁ ପୂର୍ଣ୍ଣଭାବରେ କବଳିତ କରିବାକୁ ବସିଲା, ସେତେବେଳେ ତାଙ୍କର କେବଳ ମାତ୍ର ଦୁଃଖ ହେଲା ଯେ, ସେ କେତେଗୁଡ଼ିଏ ସୁଯୋଗ ହରାଇ ବସିଲେ । ଅଜ୍ଞାନସରିତ ପାରିହେବାକୁ ଗୋଟିଏ ନୌକା ଗଢ଼ି ପାରିଲେ ନାହିଁ, ତାଙ୍କ ଇଚ୍ଛାନୁଯାୟୀ ରାମକାହାଣୀ ବୋଲି ପାରିଲେ ନାହିଁ, ଧ୍ରୁବ ପ୍ରହ୍ଲାଦ ସଦୃଶ ଭକ୍ତଙ୍କ ଆଦର୍ଶର ଅନୁଗମନ କରି ପାରିଲେ ନାହିଁ । କିନ୍ତୁ ଯାହା ହୋଇଚି, ତାଙ୍କ ପକ୍ଷରେ ତାହା ଭଲ ହୋଇଚି; କାରଣ ରାମନାମ ଯେ ତାଙ୍କ ହୃଦୟ ଭିତରେ ରହିଚି ଏ ଆତ୍ମବିଶ୍ୱାସ ତାଙ୍କର ଥିଲା ।

ତେଣୁ ପ୍ରତ୍ୟକ୍ଷଭାବରେ ଜଣାପଡ଼ୁଛି ସେ ଯଥେଷ୍ଟ ମନୋବଳ ସହିତ ଶାନ୍ତଭାବରେ ମୃତ୍ୟୁ ବରଣ କରିବା ପାଇଁ ସେ ବେଶ୍ ପ୍ରସ୍ତୁତ ଥିଲେ । ଆସ୍ତେ ଆସ୍ତେ ସ୍ୱାଭାବିକ ଭାବରେ ତାଙ୍କ ଜୀବନ ଅବସାନ ହୋଇ ଆସିଲା । ରାମନାମର ପ୍ରଶଂସା ଗାଇ ଗାଇ 1623 ଖ୍ରୀଷ୍ଟାବ୍ଦରେ ତାଙ୍କର ପ୍ରିୟ ଗଙ୍ଗା ନଦୀକୂଳରେ ଜୁଲାଇ ମାସର କୌଣସି ଦିନ (ସମ୍ଭବତଃ ଶନିବାର) ସେ ଇହଧାମ ତ୍ୟାଗ କଲେ ।

## ୨. ବ୍ୟକ୍ତି ଓ ତାଙ୍କର ବାର୍ତ୍ତା

ରାମାୟଣର ଗ୍ରନ୍ଥକାର ସନ୍ଥ ତୁଳସୀ ଦାସଙ୍କ ନାମ ଗୌରବର ଆଲୋକରେ ଉଦ୍ଭାସିତ । କିନ୍ତୁ ତାଙ୍କ ଲେଖାର ଅନ୍ତରାଳରେ ସେ ମାନବିକ ଗୁଣସମ୍ପନ୍ନ ପ୍ରିୟ ଓ ବନ୍ଧୁଜନଭାବରେ ବିଦ୍ୟମାନ । ତାଙ୍କୁ ଏଭଳି ଦେଖିବାରେ ତାଙ୍କର ଏଇ ନାମ ଆମ ଆଗରେ ଅନ୍ତରାୟ ହୋଇ ଉଠେନା । ସେ ଜୀବନବ୍ୟାପୀ ବହୁ ବାଧା ପ୍ରତିବନ୍ଧକ ପାଇ ଆସିଛନ୍ତି । ସେ ବାଲ୍ୟ-ଜୀବନରେ 'ନ ମାଇ ନ ଖାଇ' ଅବସ୍ଥାରେ ଥିଲେ । ଜୀବନର ଯୌବନରେ ତାଙ୍କର ଗୃହଭଗ୍ନ ହେଲା; ଏବଂ ମଧ୍ୟମ ବୟସରେ କାଶୀରେ ବାସ କରିବାକୁ ଠିକ୍ କଲାବେଳେ ଚତୁର୍ଦ୍ଦିଗରୁ ଲୋକେ ତାଙ୍କୁ ଆକ୍ରମଣ କରିବାକୁ ଲାଗିଲେ । ମଣିଷର ଉନ୍ନତି କରିବାର ଯେ ଇଚ୍ଛାଶକ୍ତି, ତାହାହିଁ ତା' ଜୀବନର ମାପକାଠି । ତେଣୁ ଯେତେ ଥର ସେ ପଥରେ ପଡ଼ି-ଯାଇଛନ୍ତି ସେତେ ଥର ସେ ଦବିକରି ରହିଯିବାକୁ ନିଷ୍ପତ୍ତି ଗ୍ରହଣ କରି ନାହାନ୍ତି; ବରଂ ଦ୍ୱିଗୁଣ ଉତ୍ସାହରେ ଚେଷ୍ଟା କରିଛନ୍ତି ଏବଂ ନିଜ ଅନ୍ୱେଷଣର ପଶ୍ଚାଦ୍ଧାବନ କରିଛନ୍ତି । ସେ କହନ୍ତି, "ରାମଭକ୍ତି ବଡ଼ କଷ୍ଟକର ବ୍ୟାପାର; ରାମଭକ୍ତି ସମ୍ପର୍କରେ ଆଲୋଚନା କରିବା ସହଜ; କିନ୍ତୁ ଏଇ ପଥରେ ଯେ ସୀମାହୀନ ଦୁଃଖ କଷ୍ଟ ରହିଛି, ତାହା ସେଇମାନଙ୍କୁ ଭଲରୂପେ ଜଣା ଯେଉଁମାନେ ଏ ପଥର ପଥିକ ।" ତାଙ୍କର ସକଳ ଗାମ୍ଭୀର୍ଯ୍ୟ ଓ ଧୈର୍ଯ୍ୟ ସତ୍ତ୍ୱେ, ସେ ଆଶ୍ଚର୍ଯ୍ୟଜନକ ଭାବରେ ସମସ୍ତଙ୍କ ନିକଟରେ ଭଦ୍ର ଓ ପ୍ରିୟ ହୋଇ ଉଠିଥିଲେ ।

ଯେତେଦୂର ସମ୍ଭବ କେବେହେଲେ ସେ କାହା ପ୍ରତି ଶତ୍ରୁତା ଆଚରଣ କରୁନଥିଲେ । ବନ୍ଧୁର ବନ୍ଧୁଭାବରେ, ରାମଙ୍କ ଭକ୍ତ-ଭାବରେ ଏବଂ ଅହିଂସ, ଅନାଡମ୍ବର ଓ ସରଳ ପ୍ରକୃତିର ଲୋକଭାବରେ ତାଙ୍କ ସମ୍ପର୍କରେ ଆସୁଥିବା ଲୋକମାନଙ୍କ ପ୍ରତି ସେ ବିଶ୍ୱାସଭାଜନ ହୋଇଥିଲେ । ସେ ନିଶ୍ଚୟ ଅନାସକ୍ତ ଥିଲେ—ଏହାର ଅର୍ଥ ହେଉଚି ଜନସାଧାରଣଙ୍କ ପ୍ରଶଂସା କିମ୍ବା ମନ୍ତବ୍ୟର ବହୁ ଊର୍ଦ୍ଧ୍ୱରେ ସେ ରହିପାରୁଥିଲେ । ଅନେକଙ୍କର ମନର ଧାରଣା ଯେ ସେ ଏକାକୀ ଜୀବନ କଟାଉଥିଲେ, ଦର୍ଶକମାନଙ୍କୁ ଦେଖାଦେଉ ନ ଥିଲେ, ନିଜ ଅଧ୍ୟୟନରେ ଆବଦ୍ଧ ହୋଇ ରହୁଥିଲେ, ଏ ଧାରଣା ଅତିରଞ୍ଜିତ ।

ଦୂର ସ୍ଥାନମାନଙ୍କୁ ପର୍ଯ୍ୟଟନରେ ଗଲବେଳେ ପଲ୍ଲୀ ଗାଁ-ମାନଙ୍କରେ ଏବଂ ଜମିଦାରମାନଙ୍କ ବାସଭବନରେ ତାଙ୍କୁ ରହିବାକୁ ପଡ଼ୁଥିଲା । ସେ ଯେବେ ସେମାନଙ୍କର ସଙ୍ଗଲାଭ ଗ୍ରହଣ କରୁ ନଥାନ୍ତେ ତେବେ ସେ ସେମାନଙ୍କର ପ୍ରିୟ ଅତିଥି ହୋଇ ପାରୁ ନଥାନ୍ତେ । ସେ ଉତ୍ତରପ୍ରଦେଶର ପୂର୍ବାଞ୍ଚଳରେ ପର୍ଯ୍ୟଟନ କଲା-ବେଳେ ରାସ୍ତାରେ ବହୁ ରାଜା ଏବଂ ବିଶିଷ୍ଟ ଲୋକମାନଙ୍କର ଆତିଥ୍ୟ ଗ୍ରହଣ କରୁଥିଲେ । କିନ୍ତୁ ନିଷ୍ଠୁର ଦୁର୍ବୃତ୍ତମାନେ ବାସ କରୁଥିବା କୌଣସି ଗାଁରେ ପହଞ୍ଚିଗଲେ, ସେ ସେମାନଙ୍କ ଆତିଥ୍ୟ ଗ୍ରହଣ କରିବାକୁ ମନା କରିଦେଉଥିଲେ । ଗାଁ ବାହାରେ କୌଣସି ଗୋଟିଏ ଗଛଡ଼ ଘରେ ରହିବାକୁ ସେ ବେଶି ପସନ୍ଦ କରୁଥିଲେ । ତାର ସାମାନ୍ୟ ଆତିଥ୍ୟରେ ସେ ଏତେ ମୁଗ୍ଧ ହେଉଥିଲେ ଯେ, ତା' ପରିବାରର ଲୋକମାନେ ସ୍ନେହ ନକରି କିମ୍ବା ଅନ୍ୟଲୋକମାନଙ୍କୁ ହାଇରାଣ ହରକତ ନକରି ରାମଙ୍କ ଭକ୍ତ ହୋଇ ରହନ୍ତୁ ବୋଲି

ବର ପ୍ରଦାନ କରୁଥିଲେ । ଜମିଦାର ତୋଦର ମଲ୍ଲଙ୍କ ଜମିଦାରୀ ବିଭକ୍ତୀକରଣ ବେଳେ ଗୋଟିଏ ଦଲିଲ (ବଣ୍ଟନପତ୍ର) ଲେଖାହେଲା । ତାଙ୍କଭଳି ଧର୍ମପ୍ରାଣ ବ୍ୟକ୍ତିଙ୍କୁ ଦଲିଲ ଉପରେ ସାକ୍ଷ୍ୟ ଦେବା ପାଇଁ ଡକାଯାଇଥିଲା । ତାହାଦ୍ୱାରା ସୂଚିତ ହେଉଛି ଯେ, ସେ ଜଣେ ସଚ୍ଚା ନାଗରିକ ଭାବରେ ବିଶ୍ୱସ୍ତ ଥିଲେ ଏବଂ ତାଙ୍କର ପରଲୋକଗତ ବନ୍ଧୁଙ୍କ ପୁତ୍ରପ୍ରତି ତାଙ୍କ କର୍ତ୍ତବ୍ୟ ପାଳନ କରିବାରେ ପ୍ରସ୍ତୁତ ଥିଲେ ।

ଜାତି-ବର୍ଣ୍ଣ-ସମ୍ପ୍ରଦାୟର ନ୍ୟସ୍ତସ୍ୱାର୍ଥ ବଡ଼ପଣ୍ଡାମାନେ ତାଙ୍କୁ ଭଲପାଉନଥିଲେ । ତାଙ୍କୁ ପରାଜିତ କରିବା ପାଇଁ ଏବଂ କାଶୀରୁ ବାହାର କରିଦେବା ପାଇଁ ସେମାନେ ସବୁମତେ ଲାଗିପଡ଼ିଥିଲେ; କିନ୍ତୁ ତାଙ୍କର ଧର୍ମ ସମ୍ପର୍କୀୟ ଉଦାର ମତ ବଳରେ ସେ ସେମାନଙ୍କର ଅମଙ୍ଗଳ ବାଞ୍ଛା କରୁ ନଥିଲେ ଏବଂ ବିଶ୍ୱାସ କରୁଥିଲେ ଭଗବାନ ରାମଚନ୍ଦ୍ର ତାଙ୍କୁ ରକ୍ଷା କରିବେ । ସେ ଲେଖିଛନ୍ତି—"ଏଇ ତୁଳସୀ ବହୁତ ଅସତ୍ କାର୍ଯ୍ୟ କରୁଛି ବୋଲି କେତେକ କହୁଚନ୍ତି ଏବଂ ଆଉ କେତେକ କହୁଚନ୍ତି ତୁଳସୀଟା ଗୋଟାଏ ଭଣ୍ଡ; ଅନ୍ୟ କେତେକ କହୁଚନ୍ତି ତୁଳସୀ ରାମଙ୍କର ପ୍ରକୃତ ଭକ୍ତ; ସାଧୁପୁରୁଷମାନେ ମୋତେ ଜଣେ ମହାନ୍ ସାଧୁପୁରୁଷ ବୋଲି ମନେକରନ୍ତି । ଦୁର୍ଜନମାନେ ମୋତେ ଗୋଟାଏ ବଡ଼ ଦୁର୍ଜନ ବୋଲି ଵିଚାରନ୍ତି । ମୋ ଚତୁର୍ଦ୍ଦିଗରେ ଏଇପରି ଲକ୍ଷ ଲକ୍ଷ ସତ୍ୟ ଓ ମିଥ୍ୟା ଖବରର ଢେଉ ଚାଲ ହୋଇଯାଉଚି । ମୁଁ କାହାର ଅନୁଗ୍ରହ ଭିକ୍ଷା କରୁନ କିମ୍ବା ଆପତ୍ତି ଅଭିଯୋଗ କରୁନ । ମୁଁ ସବୁ ସହ୍ୟ କରୁଚି ଏବଂ ମୋର ହୃଦୟ ଏଥିରେ ବିଚଳିତ ହୋଇଯାଉନ । ତୁଳସୀର ସମ୍ପଦ ପଡ଼ୁ କି ବିପଦ ପଡ଼ୁ, ସବୁ ରାମଙ୍କ ହାତରେ । ଏହା ଏକବାର

ନର୍ଣ୍ଣିତ କଥା ଯେ ମୁଁ ଦାସ ପର ରାମପ୍ରେମର ମୂର୍ତ୍ତିକା ଉପରେ ବଢ଼ୁଛି ।"

ତୁଳସୀ ଦାସଙ୍କର ଧର୍ମଗତ ଉଦାର ମତ ସିଧାସଳଖ ତାଙ୍କ ମାନସିକ ଦୃଷ୍ଟି କୋଣରୁ ବାହାରିଥିଲା । ଚରିତ୍ର ପାଇଁ ଗଢ଼ାଯାଇଥିବା ସାମାନ୍ୟ ଗୋଟିଏ ନିୟମଠାରୁ ଏହାର ମୂଲ୍ୟ ଯଥେଷ୍ଟ ଅଧିକ । "ସମଗ୍ର ଜଗତ ରାମଙ୍କ ଦ୍ୱାରା ପରିବ୍ୟାପ୍ତ, ଏହି ଜ୍ଞାନ ହେତୁରୁ ସେ ସମସ୍ତଙ୍କୁ କୃତାଞ୍ଜଳିପୂର୍ବକରେ ନମସ୍କାର ନ କରି ରହିପାରୁ ନଥିଲେ ।"

ଏସବୁ ସତ୍ତ୍ୱେ ତାଙ୍କର ସହଜାତ ପ୍ରକୃତ ନମ୍ରତା ସହିତ ବିଶ୍ୱାସର ଯଥେଷ୍ଟ ଦୃଢ଼ତା ଓ ସାହସ ରହିଥିଲା । ଅନ୍ୟ ଧର୍ମପ୍ରତି ତାଙ୍କର ଯେ ବିଶାଳ ଉଦାର ଭାବ ପ୍ରକାଶ ପାଉଥିଲା, ତାହା ପ୍ରଶ୍ନ କରାଯାଇ ନପାରେ । କୃଷ୍ଣ, ବୁଦ୍ଧ, ମହାବୀରଙ୍କ ଭକ୍ତମାନଙ୍କୁ ସେ ସମ୍ମାନ କରୁଥିଲେ; କିନ୍ତୁ ତାଙ୍କ ଦୃଷ୍ଟିରେ ସତ୍ୟ ଯାହା, ସେହି ସତ୍ୟ ଅନ୍ୱେଷଣରେ ସେ ତାଙ୍କ ଯାତ୍ରାପଥରୁ ଆଦୌ ବିଚ୍ୟୁତ ହେଉ ନ ଥିଲେ । ଅଯୋଧ୍ୟାର ବୈଷ୍ଣବ ବୈରାଗୀମାନେ ତାଙ୍କ ବିରୋଧରେ ବହୁ ଝଡ଼ ସୃଷ୍ଟି କଲେ । କାଶୀର ଶୈବମାନେ ତାଙ୍କୁ ଅଭିଯୁକ୍ତ କଲେ । ଏସବୁ ଦ୍ୱାରା ସେ ତାଙ୍କ ମତରୁ ଟଳିନଥିଲେ ।

ତାଙ୍କ ଭଲ ଗୁଣ ତଥା ସେ ଦୁଃଖୀ ଲୋକମାନଙ୍କର କି ଉପକାର କରୁଥିଲେ, ଏ ସମ୍ପର୍କରେ ବହୁ ଗଳ୍ପ ପରମ୍ପରାକ୍ରମେ ରହି-ଆସିଛି । ତନ୍ମଧ୍ୟରୁ ସ୍ୱତନ୍ତ୍ରଭାବରେ ବର୍ଣ୍ଣିତ ହୋଇଥିବା କେତୋଟି ଗଳ୍ପ ଆଶ୍ଚର୍ଯ୍ୟ ଓ କୌତୁକପୂର୍ଣ୍ଣ, ଯାହା କି ତାଙ୍କ ଜୀବନ ଓ ଅଭିପ୍ରାୟ ଉପରେ ସୁନ୍ଦର ଆଲୋକପାତ କରନ୍ତି । ଜଣେ ବ୍ରାହ୍ମଣ ତୀର୍ଥଯାତ୍ରୀ ସମ୍ପର୍କରେ ଗୋଟିଏ ଗଳ୍ପ ରହିଛି । ସେ ବ୍ରାହ୍ମଣଟି ଶାସ୍ତ୍ରଦୃଷ୍ଟିରେ ଗୋଟିଏ ଜଘନ୍ୟ ଦୋଷ କରିପକାଇଥିଲା ଏବଂ ତାର ପ୍ରାୟଶ୍ଚିତ୍ତ

କରିବାକୁ କାଶୀ ଆସିଥିଲା । ଶାସ୍ତ୍ରାଧିକାରୀମାନେ ତାକୁ ଅଜାତିଆ ରହିବାକୁ କହିଲେ । କିନ୍ତୁ ସ୍ୱିତକାମୀ କବି ତାକୁ କେବଳ ଯେ ଆପଣାର କରିନେଲେ ତା' ନୁହେଁ, ରାମଙ୍କ ନାମ ଉଚ୍ଚାରଣ କରି ତା ହାତରୁ ଖାଦ୍ୟ ଗ୍ରହଣ କଲେ । ଆଉ ଗୋଟିଏ ସବୁବେଳର ପ୍ରଚଳିତ ଗଳ୍ପ ଅଛି ଯେ ରାମ ନିଜେ ରାତିରେ ତାଙ୍କ ଘର ଜଗନ୍ତି ବୋଲି ତାଙ୍କୁ କୁହାଯିବାରୁ, ତାଙ୍କ ଘରର ସମସ୍ତ ଜିନିଷପତ୍ର ସେ ଗରିବ ଅଭାବଗ୍ରସ୍ତ ଲୋକଙ୍କୁ ଦାନ କରିଦେଇଥିଲେ । ଏହି ଗଳ୍ପ ଆମକୁ କେବଳ ତାଙ୍କର ନିଃସ୍ୱାର୍ଥପରତାର ଧାରଣା ଦିଏନି; ତାଙ୍କର ଉପରେ ବିରାଟ ବିଶ୍ୱାସ ଥିଲା ତାର ପରିଚୟ ଦିଏ । ରେଭରେଣ୍ଡ ଏଡୱିନ୍ ଗ୍ରିଭସ୍ ଏହାକୁ ବ୍ୟାଖ୍ୟା କରି କହିଛନ୍ତି ଯେ ଈଶ୍ୱରଙ୍କର ଭକ୍ତମାନଙ୍କ ପ୍ରତି ସବୁବେଳେ ସଜାଗ ଦୃଷ୍ଟି ରହିଛି । ବୈଷୟିକ ସମ୍ପତ୍ତି ଜମା କରିବା ଲାଗି କିମ୍ବା ଜନସାଧାରଣଙ୍କଠାରେ ସୁପରିଚିତ ହେବା ଲାଗି ସେ ଆଦୌ ଯତ୍ନ କରୁ ନ ଥିଲେ । ବାର୍ଦ୍ଧକ୍ୟର ଯେ ଶାରୀରିକ ଦୁଃଖଯନ୍ତ୍ରଣା ତାହା କେତେକ ପରିମାଣରେ ଭକ୍ତଭାବରେ ତାଙ୍କ ନିଜର ଦୋଷ-ଦୁର୍ବଳତା ସହିତ ସଂଯୁକ୍ତ ବୋଲି ପ୍ରକୃତରେ ଏହି ସାଧୁପୁରୁଷ ବିଶ୍ୱାସ କରୁଥିଲେ ।

ସେ ଅନେକ ଆଶ୍ଚର୍ଯ୍ୟ ବିଦ୍ୟା ସଂଘଟନ କରୁଥିଲେ ବୋଲି ବହୁ କାହାଣୀ ପ୍ରଚଳିତ ଥିଲେ ସୁଦ୍ଧା, ବିଶ୍ୱାସ କରିବା ପାଇଁ ଯଥେଷ୍ଟ କାରଣ ରହିଛି ଯେ, ସେ କୌଣସି ପ୍ରକାର କୁସଂସ୍କାର ବା ଛଳନା ପ୍ରତି ନିସ୍ପୃହ ଥିଲେ । ଯେଉଁମାନେ କୌଣସି ଧର୍ମ-ମନ୍ଦିରକୁ ପୁତ୍ର ସନ୍ତାନ ପାଇଁ କିମ୍ବା ଦୃଷ୍ଟିଶକ୍ତି ଫେରିପାଇବା ପାଇଁ ଯାଉଥିଲେ, କିମ୍ବା ଯେଉଁମାନେ ଭୂତପ୍ରେତ ବିଶ୍ୱାସ କରୁଥିଲେ କିମ୍ବା ଯେଉଁ କୃତ୍ରିମ ଯୋଗୀମାନେ ଅଦୃଶ୍ୟ ଅଜ୍ଞାତ ଇତ୍ୟାଦି ବିଷୟରେ

ଆଲୋଚନା କରୁଥିଲେ, ସେ ସେମାନଙ୍କୁ ସବୁଦିଗରୁ ଘୃଣା କରୁଥିଲେ ।

ସୂକ୍ଷ୍ମ ସୌନ୍ଦର୍ଯ୍ୟଜ୍ଞାନ ତୁଳସୀ ଦାସଙ୍କ ବ୍ୟକ୍ତିତ୍ୱର ଅନ୍ୟତମ ବିସ୍ମୟକର ଦୃଷ୍ଟିକୋଣ । ତାଙ୍କର ଶ୍ୟାମଳବର୍ଣ୍ଣ ଦେବତାଙ୍କର ପଦ୍ମନୟନ, ପଦ୍ମପାଦ, ରକ୍ତାଭ କରତଳ ଏବଂ ପୀତାମ୍ବର— ଏସବୁର ସହସ୍ର ସହସ୍ର ସୂକ୍ଷ୍ମ ଅଂଶ ପ୍ରତି ଗୁରୁତ୍ୱ ଦେଇ ତାଙ୍କୁ ବର୍ଣ୍ଣନା କଲାବେଳେ ସେ ସ୍ୱର୍ଗୀୟ ଆନନ୍ଦ ଉପଭୋଗ କରନ୍ତି । ବିବାହବେଦୀରେ ବସିଥିଲା ବେଳେ କିମ୍ବା ବନବାସ କଲାବେଳେ, କିମ୍ବା ଅଯୋଧ୍ୟାର ସିଂହାସନରେ ବସିଥିବା ବେଳେ, ରାମସୀତାଙ୍କର ଚିତ୍ରଗୁଡ଼ିକ ବିଭିନ୍ନ ଛନ୍ଦରେ ଲିଖିତ ହୋଇ ତାଙ୍କ ରାମାୟଣରୂପକ ତନ୍ତ୍ରର ସୂତ୍ରଗର ବିଦ୍ୟମାନ । ରୂପବର୍ଣ୍ଣ, ସୌନ୍ଦର୍ଯ୍ୟ, ମାଧୁରୀ, ଶକ୍ତି ପ୍ରଭୃତି ସବୁ ସମ୍ପଦ ସେ ରାମଙ୍କଠାରେ ଦେଖିଚନ୍ତି ଏବଂ ସେଇ ସମ୍ପଦ ସବୁକୁ ନିଜ ଲେଖାରେ ପ୍ରଶଂସା କରିଚନ୍ତି । ସେ କହିଚନ୍ତି, "ମୁଁ ଯେ କୌଣସି ବ୍ୟକ୍ତିକୁ ଗୁରୁ ବୋଲି ମାନିବି ଯଦି ସେ ମୋତେ ଅଜ୍ଞାନତାର ଉଲ୍ଲେଖ ନକରି ଜ୍ଞାନ ବିଷୟ ବୁଝାଇ ପାରିବ କିମ୍ବା ଅନ୍ଧକାରର ପ୍ରସଙ୍ଗ ନ କହି ଆଲୋକ ବିଷୟ ବର୍ଣ୍ଣନା କରିପାରିବ, କିମ୍ବା ଆକାର ବିଷୟ ଉଲ୍ଲେଖ ନକରି ନିରାକାରକୁ ଆଣି ଥୋଇପାରିବ ।"

କାଶୀ କିମ୍ବା ଅଯୋଧ୍ୟାରେ ଥିବାବେଳେ ତାଙ୍କ ବ୍ୟକ୍ତିଗତ ଜୀବନର ଉଲ୍ଲେଖ ଦେଖିବାକୁ ମିଳେ ନାହିଁ; କିନ୍ତୁ ସରଯୂ ଓ ଗଙ୍ଗା ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା । ଏହି ଦୁଇ ନଦୀରେ ସ୍ନାନ ତାଙ୍କ ଜୀବନର ଦୈନନ୍ଦିନ କାର୍ଯ୍ୟାବଳୀର ଗୋଟିଏ ଅଙ୍ଗସ୍ୱରୂପ ଥିଲା । ତତ୍ତ୍ୱାନ୍ୱେଷୀ ପକ୍ଷରେ ଦୁର୍ଗ୍ଧ ଏବଂ ଫଳାହାର ଶ୍ରେୟସ୍କର

ବୋଲି ସେ ନିର୍ଦ୍ଦେଶ କରିଥିଲେ ଏବଂ ତାହା ହିଁ ତାଙ୍କର ପ୍ରିୟ ଖାଦ୍ୟ ଥିଲି ।

'ଗୋସ୍ୱାମୀ' ଏଇ ପଦବୀ ତାଙ୍କ ନାମ ସହିତ ଏତେ ନିରବଚ୍ଛିନ୍ନ ଭାବରେ ଲାଗିରହିଥିଲା ଯେ ଅନ୍ତତଃ କେତେ କାଳ ପାଇଁ ସେ ଗୋଟିଏ ଆସ୍ଥାନର ମୁଖ୍ୟଭାବରେ ରହିଥିଲେ ବୋଲି ସୂଚନା ମିଳେ । କାଶୀର ଲୋଲାର୍କ କୁଣ୍ଡ ନିକଟରେ ସେଇ ସ୍ଥାନଟି ଗୋସ୍ୱାମୀ ତୁଳସୀ ଦାସଜୀଙ୍କ ଆସ୍ଥାନ ନାମରେ ପରିଚିତ । ଯେବେ ଏପରି ହୋଇଥାଏ, ତେବେ ସେ ଅବସ୍ଥାରେ ସେ ବଡ଼ ଅସ୍ୱସ୍ତି ବୋଧ କରୁଥିବେ; କାରଣ ସେ ସ୍ପଷ୍ଟଭାବରେ ଦୁଃଖ କରିଛନ୍ତି ଯେ ସେ ଗୋସ୍ୱାମୀ ହେବାଦ୍ୱାରା ତାଙ୍କ ଜୀବନର ତାତ୍ପର୍ଯ୍ୟ ଭୁଲିଯାଉଛନ୍ତି । ଜଣେ ଭକ୍ତଭାବରେ, ଜଣେ ତତ୍ତ୍ୱାନ୍ୱେଷୀଭାବରେ ତାଙ୍କର ଅଭିଜ୍ଞତା ଦୃଷ୍ଟିରୁ ଆନୁଷ୍ଠାନିକଭାବରେ ରହିବା ପାଇଁ ସେ ଅନିଚ୍ଛୁକ ଅନିଚ୍ଛା ପ୍ରକାଶ କରୁଥିଲେ ।

ସଙ୍ଗୀତ ଏବଂ ଜ୍ୟୋତିଷଶାସ୍ତ୍ର ଏ ଦୁଇଟି ତାଙ୍କର ପ୍ରିୟ ବିଷୟ ଥିଲା ଏବଂ ସମ୍ଭବତଃ ସେ ଚେସ୍ ଖେଳରେ ଆନନ୍ଦ ଅନୁଭବ କରୁଥିଲେ । ଆନ୍ତରିକଭାବରେ ସେ ସବୁ ବିଷୟରେ ବୁଡ଼ିରହିଥିଲେ ମଧ୍ୟ ଥଟ୍ଟା-କୌତୁକ କରିବାରେ ବିଚକ୍ଷଣ ଜ୍ଞାନ ତାଙ୍କଠାରେ ରହିଥିଲା । ସେ ତାଙ୍କର ଭଦ୍ର ଚତୁର ଭଙ୍ଗୀରେ ଦିଅଁ ଦେବତାଙ୍କୁ ମଧ୍ୟ ଥଟ୍ଟା କରିବାକୁ ଛାଡ଼ନ୍ତି ନାହିଁ । "ଏଇ ଦିଅଁ ଦେବତାମାନେ ପରମହିତୈଷୀ ବୋଲି ଅଙ୍ଗଭଙ୍ଗୀ ପ୍ରକାଶ କରନ୍ତି; କିନ୍ତୁ ସବୁବେଳେ କିଛି ଉପାୟ ଉଦ୍ଭାବନ କରୁଥାନ୍ତି ।" କମ୍ବା ରାମ ବନରେ ପଶିଗଲେ ଯିମିତି ଅତି ଶୀଘ୍ର ପଥରଗୁଡାକ ଚନ୍ଦ୍ରବଦନା ସୁନ୍ଦରୀ ପାଲଟିଯାଆନ୍ତି, ଠିକ୍ ସିମିତି ଏକାକୀ ରହୁଥିବା ସାଧୁମାନେ ଅନେକ

ସ୍ତ୍ରୀଲୋକଙ୍କୁ ପ୍ରିୟ୍ୱା କରି ରଖନ୍ତୁ ।

ତାଙ୍କ ନିଜ ଲେଖାରୁ ଏବଂ ଅନ୍ୟମାନଙ୍କ ଲେଖାରୁ ଇଙ୍ଗିତ ମିଳେ ଯେ, ସେ ସୁନ୍ଦର-ଗୌରକାନ୍ତ, ରୂପବାନ୍ ସୁପୁରୁଷ ଥିଲେ । ବିଶ୍ୱାସ କରାଯାଉଛି ଯେ, ତାଙ୍କ ଜୀବଦ୍ଦଶାରେ ତାଙ୍କର ଗୋଟିଏ ପ୍ରତିକୃତି ପ୍ରସ୍ତୁତ ହୋଇଥିଲା । ବର୍ତ୍ତମାନ ତାହା ପ୍ରହ୍ଲାଦ ଘାଟସ୍ଥିତ ତାଙ୍କର ବନ୍ଧୁ ଗଙ୍ଗାରାମ ଯୋଷୀଙ୍କ ଉତ୍ତରାଧିକାରୀମାନଙ୍କ ପାଖେ ରହିଛି । ସେହି ଛବିଟିରୁ ଜଣାଯାଏ, ସେ ଟିକିଏ ଦୁର୍ବଳକାୟ; କିନ୍ତୁ ଏକାଗ୍ରଚିତ୍ତ ଧାର୍ମିକ ବ୍ୟକ୍ତି ଥିଲେ ।

ତାଙ୍କର ସନ୍ଥଜନୋଚିତ ଜୀବନ ସହିତ ବିଶାଳ ପାଣ୍ଡିତ୍ୟ ଥିଲା । ଏକପକ୍ଷରେ ଭାରତୀୟ ଦର୍ଶନର ପ୍ରଧାନ ଗୋଷ୍ଠୀ ସହିତ ତାଙ୍କର ଯେପରି ଘନିଷ୍ଠ ପରିଚୟ ଥିଲା, ଅନ୍ୟପକ୍ଷରେ ସଂସ୍କୃତ ଏବଂ ପ୍ରାକୃତ କବିମାନଙ୍କର ସାହିତ୍ୟିକ ପରମ୍ପରାସଂପନ୍ନ କାବ୍ୟଗ୍ରନ୍ଥ ସହିତ ସେଇପରି ପରିଚୟ ଥିଲା । ତାଙ୍କର ଏଇ ପରିଚିତି ଭୁଲିଯିବା ଅସମ୍ଭବ; କିନ୍ତୁ ସେ ତାଙ୍କ ଜ୍ଞାନକୁ ଅତି ସାମାନ୍ୟ ମନେ କରୁଥିଲେ । ଆଶ୍ଚର୍ଯ୍ୟର କଥା ଯେ ସାମାନ୍ୟ ସାହିତ୍ୟିକ କୌଶଳର ନିର୍ଦ୍ଧାରିତ ସୀମା ପ୍ରତି ଏବଂ ବୌଦ୍ଧିକ ସୂକ୍ଷ୍ମ ଦୃଷ୍ଟି ପ୍ରତି ତାଙ୍କର ଜୀବନ୍ତ ଆଗ୍ରହ ଥିଲା । ସେ କହନ୍ତି, "ଜ୍ଞାନପଥ ଖଣ୍ଡାଧାର ପରି ଏବଂ ଜୀବନରେ ବହୁ ପ୍ରଚ୍ଛନ୍ନ ବିପଦ ରହିଛି ଯାହାକୁ ଏଡ଼ିବା ଦୁଃସାଧ୍ୟ ।" ଯେଉଁ ବ୍ୟକ୍ତି ପଦଗୁଡ଼ିଏ ବ୍ୟବହାର କରିବାରେ ଦକ୍ଷତା ଅର୍ଜନ କରିଥାଏ, ସେ ପରଂବ୍ରହ୍ମଙ୍କୁ ଉପଲବ୍ଧି କରି ପାରିବ ନାହିଁ କିମ୍ବା ଦୁଃଖକଷ୍ଟରୁ ପରିତ୍ରାଣ ପାଇ ପାରିବ ନାହିଁ । କବିତା, ନୈତିକତା, ପାଣ୍ଡିତ୍ୟ – ଏଗୁଡ଼ିକ ନିଜ ନିଜ କ୍ଷେତ୍ରରେ ଉତ୍ତମ; କିନ୍ତୁ ଏଗୁଡ଼ିକ ପ୍ରେମମନ୍ତ୍ରରେ ମନ୍ତ୍ରିତ ହେବା ଆବଶ୍ୟକ । ତାଙ୍କ ଲେଖାରେ ସେ

ଯେଉଁ ମାନବିକ ପ୍ରେମର ବନ୍ଦନା କରିଚନ୍ତି, ତାହା ଈଶ୍ବରିକ ପ୍ରେମରୁ ସ୍ବତନ୍ତ୍ର କରିବା ଅସମ୍ଭବ । ସେ ତାଙ୍କର ଭଗବାନଙ୍କ ପ୍ରତି ଯେଉଁସବୁ ପ୍ରାର୍ଥନା କରିଚନ୍ତି ତହିଁରେ ମାନବିକତାର ଗଭୀର ସ୍ବଚ୍ଛେଦ୍ୟାସ ଲକ୍ଷିତ ହୁଏ ଏବଂ ଏ ସମସ୍ତ ପ୍ରବର୍ତ୍ତନର ଉଦ୍ଦେଶ୍ୟ ଉପଯୁକ୍ତ ଜୀବନର ଉତ୍କର୍ଷଣ ।

ତୁଳସୀ ଦାସ ରାମଚରିତମାନସ ଲେଖିବାର ଆଜକୁ ଚାରି ଶତାବ୍ଦୀ ଗଡ଼ିଗଲାଣି; ଅଥଚ ତାଙ୍କର ବାଣୀ ତାଙ୍କ ଦେଶର ଲକ୍ଷ ଲକ୍ଷ ଜନଜୀବନର ମନ ଓ ହୃଦୟ ଉପରେ ପ୍ରଭାବ ପକାଇଆସୁଚି । ତାଙ୍କ ବାଣୀର ଶାଶ୍ବତ ମୂଲ୍ୟ ଓ ଅନ୍ତର୍ନିହିତ ଶକ୍ତି ହିଁ ଏହାର କାରଣ । ସେ ଗୋଟିଏ ସରଳବିଶ୍ବାସ ହିଁ ଲୋକଙ୍କୁ ଶିକ୍ଷା ଦେଉଥିଲେ । ସେ କହୁଥିଲେ, "ରାମପ୍ରେମ ଗୋଟିଏ ସରଳ ହୃଦୟ ଭିତରେ ଜନ୍ମ ହୁଏ । ସରଳ କଥା ଓ କାର୍ଯ୍ୟରେ ତାହା ପ୍ରତିବିମ୍ବିତ ହୁଏ ।" ଧର୍ମପୂର୍ଣ୍ଣ ଭକ୍ତି ତାଙ୍କ ପକ୍ଷରେ ଜୀବନର ଗୋଟିଏ ପନ୍ଥା; କିନ୍ତୁ ସେ ଭକ୍ତି ପ୍ରକୃତ ଭକ୍ତି ନୁହେଁ, ଯେବେ ତାହା ଭକ୍ତ ଜୀବନର ରୂପାନ୍ତର ନଆଣିପାରେ ଏବଂ ଶାନ୍ତି ଓ ମାନବପ୍ରୀତି ତାକୁ ଦେଇ ନପାରେ । ତାଙ୍କ ମହାକାବ୍ୟର ପ୍ରଧାନ କଥାବସ୍ତୁ ହେଉଚି ପାପ ଓ ଅଧର୍ମ ଉପରେ ପୁଣ୍ୟର ଜୟ । "ସାହସ, ଧୈର୍ଯ୍ୟ, ସୂକ୍ଷ୍ମ ବିବେଚନା, ଆତ୍ମସଂଯମ, ସ୍ଥିର ଓ ଅବିଚଳିତ ମନ, ପ୍ରେମ ଓ ଦୟାପୂର୍ଣ୍ଣ ହୃଦୟ—ଏଗୁଡ଼ିକ ହେଉଚି ଅସ୍ତ୍ରଶସ୍ତ୍ର; ଯାହାକୁ ଘେନି ରାମ ଯୁଦ୍ଧ କରିଚନ୍ତି ଏବଂ ଯୁଦ୍ଧରେ ଜୟୀ ହୋଇପାରିଚନ୍ତି । ଏହା ଏତେ ସୁନିଶ୍ଚିତ ଏବଂ ଭାରତୀୟ ଜୀବନଦର୍ଶନର କର୍ଯ୍ୟାସ ଏଥିରେ ଏତେ ବେଶି ପରିମାଣରେ ରହିଚି ଯେ ଏହା ଭାରତୀୟ ମନକୁ ପ୍ରଭୂତ ଭାବରେ ଉଦ୍‌ବୁଦ୍ଧ କରିପାରିଚି ।

ତୁଳସୀ ଦାସ ଅନୁଭବ କରୁଥିଲେ ଯେ, ଯାହା ଉଚ୍ଚକୋଟୀର କବିତା ତାହା ନିଶ୍ଚୟ ସରଳ ହେବ ଏବଂ ସହଜରେ ସମସ୍ତଙ୍କ ପାଖରେ ପହଞ୍ଚିପାରିବ; ଯେପରି ଗଙ୍ଗାଜଳ ଜନସାଧାରଣଙ୍କ ପାଖରେ ଅତି ପ୍ରିୟ ହୋଇ ପହଞ୍ଚି ପାରେ । ମାନବିକ ଘଟଣା ପ୍ରସଙ୍ଗରେ ସେ ମଣିଷର କଥା ଯେଉଁ ପ୍ରଣାଳୀରେ ପ୍ରକାଶ କରନ୍ତି ସ୍ୱଭାବତଃ ଜନସାଧାରଣ ତହିଁରେ ତୃପ୍ତି ଅନୁଭବ କରନ୍ତି; କାରଣ ବାସ୍ତବ ଜୀବନରେ ସେ ସେଇ ପ୍ରକାର କାର୍ଯ୍ୟାବଳୀର ସମ୍ମୁଖୀନ ହୋଇଥାନ୍ତି । ଏଇ ନିଷ୍କପଟ ଅଥଚ ଉଦ୍ଦେଶ୍ୟମୂଳକ ଲେଖାର ପ୍ରଭାବ ଶୀଘ୍ର ଉପଲବ୍ଧି ନ ହୋଇ ରହିପାରୁ ନ ଥିଲା ।

ଉତ୍ତର-ଭାରତର ଅନ୍ୟ କୌଣସି କବି ଏତେ ବିଶ୍ୱସ୍ତ ଓ ନିପୁଣଭାବରେ ଭାରତୀୟ ଅନ୍ତଃସ୍ଥଳର ଚିନ୍ତାଧାରାକୁ ଏବଂ ସାଂସ୍କୃତିକ ପରମ୍ପରାକୁ ନିଜ ଲେଖା ଭିତରେ ପ୍ରତିଫଳନ କରିନାହାନ୍ତି ଏବଂ କେହି ହେଲେ ବହୁ ଶତାବ୍ଦୀବ୍ୟାପୀ ଜନଜୀବନର ସାଂସ୍କୃତିକ ଆଭ୍ୟନ୍ତର-ବାହ୍ୟର ଓ ବିବର୍ତ୍ତିତ ଚିନ୍ତାଧାରାରେ ଶାଶ୍ୱତ ଚିହ୍ନ ରଖିଦେଇ ନାହାନ୍ତି । ତାର କାରଣ ହେଉଛି ମାନବ ଜୀବନର ଅବସ୍ଥା ବିଷୟରେ ସେ ଗମ୍ଭୀରଭାବରେ ଚିନ୍ତା କରୁଥିଲେ ଏବଂ ଧର୍ମଗତ ସାଂପ୍ରଦାୟିକତାର ବନ୍ଧନରୁ ସଂପୂର୍ଣ୍ଣ ମୁକ୍ତ ଥିଲେ । ସେ ଯୁଗରେ ତାଙ୍କ ସମସାମୟିକ ଅଧିକାଂଶ ସାଧୁସନ୍ଥ ଓ ଚିନ୍ତାଶୀଳ ବ୍ୟକ୍ତିମାନେ ଗୋଷ୍ଠୀ କିମ୍ବା ଶ୍ରେଣୀ ଗଠନ କରିବାକୁ ବ୍ୟସ୍ତ ଥିଲେ । କିନ୍ତୁ ସେ କବି ଓ ସାଧୁପୁରୁଷ ଭାବରେ ତାଙ୍କର ସମସ୍ତ ଶକ୍ତି ବିନିଯୋଗ କରୁଥିଲେ ଗୋଟାଏ ଐକ୍ୟ ଏବଂ ସମନ୍ୱିତ ଦୃଷ୍ଟିକୋଣରେ ପହଞ୍ଚିବା ପାଇଁ । ସେ ନିଜର ପ୍ରବର୍ତ୍ତିତ ପନ୍ଥାରେ ତାଙ୍କର ଜନଜୀବନ ମଧ୍ୟରେ ଭାବଗତ ଅଖଣ୍ଡତାର ଉନ୍ମୟନ ପାଇଁ ଯଥେଷ୍ଟ କରୁ

କରିପାରିଥିଲେ, ଏବଂ ପରିଶେଷରେ ଧର୍ମ-ଯୋଦ୍ଧାମାନଙ୍କ ଅପେକ୍ଷା ଓ ପ୍ରତିମାପୂଜା-ବିରୋଧୀମାନଙ୍କ ଅପେକ୍ଷା ଏ ଦିଗରେ ଅଧିକ ସିଦ୍ଧି ଲାଭ କରିଥିଲେ । ସେ ଗୋଟିଏ ସୁନ୍ଦର ସମାଜ ମନ-ମଧ୍ୟରେ ରୂପାୟିତ କରିଥିଲେ । ତାଙ୍କ ଈଶ୍ୱରଙ୍କ ରାଜ୍ୟର ପ୍ରତି ବ୍ୟକ୍ତି ଏବଂ ଆଦର୍ଶ ନାଗରିକ ସେଇ ସମାଜର ଏପରି ଗୋଟିଏ ମଣିଷ ହେବା ଆବଶ୍ୟକ, ଯିଏ କି କେବଳ ଅଜ୍ଞାନତା ଏବଂ ଦୁଷ୍ପ୍ରବୃତ୍ତିରୁ ମୁକ୍ତ ହୋଇ ନ ଥିବ, ସେ ମଧ୍ୟ ରୋଗ ଓ ଅଭାବରୁ ମୁକ୍ତ ହୋଇ-ଥିବ । ସେ ସ୍ୱୀକାର କରିଚନ୍ତି, ଦାରିଦ୍ର୍ୟ ଅପେକ୍ଷା ଗୁରୁତର ଅଭିଶାପ ନାହିଁ ଏବଂ ଅନ୍ୟର ମଙ୍ଗଳ କରିବାଠୁ ବଳି ଉଚ୍ଚତର କର୍ତ୍ତବ୍ୟ ନାହିଁ । ଶୃଙ୍ଖଳିତ ଜୀବନ ପ୍ରତି ଏବଂ ଗଭୀର ବିଚାରଶୀଳତା ଏବଂ ଜାତିର ସଞ୍ଚିତ ଜ୍ଞାନ ଉପରେ ପ୍ରତିଷ୍ଠିତ ସୁଦୃଢ଼ ଆଦର୍ଶ ପ୍ରତି ତାଙ୍କର ଯଥେଷ୍ଟ ସମ୍ମାନ ଥିଲା । କିନ୍ତୁ ସେ ଜୀବନର ଯେଉଁ ପନ୍ଥା ନିଜେ ପ୍ରଚାର କରିଚାଲିଥିଲେ ତହିଁରେ ଜାତି,-ଲିଙ୍ଗ ଏବଂ କାର୍ଯ୍ୟ-କ୍ଷେତ୍ରର ବିଭେଦ କିଛି ନ ଥିଲା । ବୟୋଧିକ ପରାମର୍ଶକମାନେ ବଡ଼ ବଡ଼ ଅର୍ଥଶୂନ୍ୟ କଥା କହି, ଲୋକମାନଙ୍କ ମନକୁ ବିଚଳିତ କରୁଥିଲେ । ଏହା ଦେଖି ସେ ଅସନ୍ତୁଷ୍ଟ ହୋଇପଡ଼ୁଥିଲେ ।

ଲୋକମାନଙ୍କର ଜୀବନକୁ ଯେଉଁ ନୈରାଶ୍ୟବାଦ ଏବଂ କଳ୍ପନା-ବାଦର କୁହେଳିକା ଅନ୍ଧକାରାଚ୍ଛନ୍ନ କରି ରଖିଥିଲା ତାକୁ ସେ ନିଜର ସୁମହତ୍ କାର୍ଯ୍ୟଦ୍ୱାରା ଦୂରୀଭୂତ କରିପାରିଲେ ଏବଂ ସେମାନଙ୍କୁ ଦେଇଥିଲେ ଗୋଟିଏ ସୁସ୍ଥ ଓ ସୁଦୃଢ଼ ଧର୍ମବିଶ୍ୱାସ; ଯାହାର ଅର୍ଥ ହେଉଚି ଆଶା, ଆନନ୍ଦ, ବିଶ୍ୱାସ ଓ ପରିପୂର୍ଣ୍ଣତା ।

ଏହା ନିତାନ୍ତ ସ୍ୱାଭାବିକ ଯେ ଆମର ଏ ଯୁଗରେ ତୁଳସୀ ଦାସଙ୍କର ଜଣେ ପ୍ରଧାନ ଉପାସକ ଏବଂ ସମାନ ହୃଦୟବିଶିଷ୍ଟ ଅନ୍ୟ ସମ୍ପନ୍ନ

ମହାତ୍ମା ଗାନ୍ଧୀ ଜନଜୀବନକୁ ସଚେତନ କରି ଗଢ଼ିବା ପାଇଁ ଏବଂ ଜାତିର ପୁନର୍ଗଠନ କ୍ଷେତ୍ରରେ ଜନସାଧାରଣଙ୍କ ବିଶ୍ୱାସ ପୁନଃ ପ୍ରତିଷ୍ଠିତ କରିବା ପାଇଁ କବିଙ୍କ ଲେଖାରୁ ଯଥେଷ୍ଟ ପ୍ରେରଣା ପାଇଥିଲେ ।

## କେତୋଟି ପ୍ରତିନିଧିମୂଳକ କବିତା

ତୁଳସୀ ଦାସଙ୍କର କେତୋଟି ପ୍ରତିନିଧିମୂଳକ ଲେଖାର ଅନୁବାଦ ତଳେ ଦିଆଯାଉଛି ।

### ରାମଲଲା ନାଚୁ

'ରାମଲଲା ନାଚୁ' କବିଙ୍କର ପ୍ରଥମ କ୍ଷୁଦ୍ର କବିତା ଗ୍ରନ୍ଥ । ଏଥିରେ ବର୍ଣ୍ଣନା କରାଯାଇଛି କେତେଗୁଡ଼ିଏ ବର୍ଣ୍ଣବିଭ୍ରମଯୁକ୍ତ ଉତ୍ସବର ଦୃଶ୍ୟ । ଅନୁମାନ କରାଯାଏ ସେଗୁଡ଼ିକ ରାମଙ୍କ ବିବାହ ସହିତ ସଂପୃକ୍ତ ।

"କୌଶଲ୍ୟା ରାଣୀଙ୍କ କୋଳରେ ରାମ ବରବେଶରେ ବିରାଜିତ । ରାମଙ୍କ ମସ୍ତକ ଉପରେ କୌଶଲ୍ୟା ରାଣୀଙ୍କ ଶାଢ଼ିର ଅଞ୍ଚଳ ବେଶ୍ ଶୋଭା ପାଉଛି । ପାଖରେ ମାଳୀଘରର ଅତି ସୁନ୍ଦରୀ ଝିଅଟିଏ ଦଣ୍ଡାୟମାନ । ସେ ହସ୍ତରେ ଧାରଣ କରିଛି ମଣି-ମାଣିକ୍ୟ-ଖଚିତ କନକ-ମୁକୁଟ ଏବଂ ହସି ହସି ସୁଲଳିତ ସ୍ୱରରେ ଗୀତ ଗାଇଚାଲିଛି ।"

### ବୈରାଗ୍ୟ ସନ୍ଦୀପନୀ

'ବୈରାଗ୍ୟ ସନ୍ଦୀପନୀ'ରେ କବିଙ୍କର ପ୍ରଧାନ ଦୃଷ୍ଟି ନୈତିକ ଶୃଙ୍ଖଳା ଏବଂ ଦର୍ଶନ ଉପରେ ରହିଛି ।

"ରାତିର ଭୂଷଣ ଚନ୍ଦ୍ର, ଏବଂ ଦିନର ଭୂଷଣ ସୂର୍ଯ୍ୟ
ଭକ୍ତର ଭୂଷଣ ଭକ୍ତି, ଏବଂ ଭକ୍ତିର ଭୂଷଣ ଜ୍ଞାନ,

ଜ୍ଞାନର ଭୂଷଣ ଧ୍ୟାନ ଏବଂ ଧ୍ୟାନର ଭୂଷଣ ତ୍ୟାଗ;
ତୁଳସୀ କହୁଛି ତ୍ୟାଗର ଭୂଷଣ ହେଉଛି
ବିଶୁଦ୍ଧ ନିର୍ମଳ ଶାନ୍ତି ।"

## ଜାନକୀ ମଙ୍ଗଳ

'ଜାନକୀ ମଙ୍ଗଳ'ରେ କବି ରାମ ଓ ଜାନକୀଙ୍କର ବିବାହ ବର୍ଣ୍ଣନା କରିଛନ୍ତି—

"ଚନ୍ଦ୍ରାତପ ତଳେ ବେଦୀ ଉପରେ ବର ଉପବିଷ୍ଟ ଏବଂ ତାଙ୍କୁ ଅବଲୋକନ କରି ବିଶ୍ୱର ନରନାରୀ ମୁଗ୍ଧ ହେଉଚନ୍ତି । ବସନ୍ତ-ବନରେ କାମଦେବ ପରି ସେ ଶୋଭା ପାଉଚନ୍ତି । ରାଜପ୍ରାସାଦର ଗବାକ୍ଷପଥରେ ରାମଙ୍କୁ ଚାହୁଁଚନ୍ତି ରାଜପ୍ରାସାଦର ରାଣୀମାନେ ଏବଂ ସେମାନେ କଥାବାର୍ତ୍ତା ହେଲାବେଳେ ସେମାନଙ୍କର ଦନ୍ତପନ୍ତି ବିଜୁଳି ପରି ଚକ୍ ଚକ୍ ଦିଶୁଛି ।"

## ରାମଚରିତମାନସ

'ରାମଚରିତମାନସ'ର ପ୍ରଧାନ କାହାଣୀ ଚତୁର୍ଦ୍ଦିଗରେ ଧର୍ମ, ପୌରାଣିକ ଗଳ୍ପ ଏବଂ ଦାର୍ଶନିକ ବ୍ୟାଖ୍ୟାମାନ ବହୁଳଭାବେ ଗ୍ରଥିତ ହୋଇ ରହିଛି । ଏଗୁଡ଼ିକର ବ୍ୟବହାର ଦ୍ୱାରା କବିଙ୍କର ଇଷ୍ଟଦେବତା ଏବଂ ପରଂବ୍ରହ୍ମ ରାମଙ୍କ ପ୍ରତି କବିଙ୍କର ଭକ୍ତି ରୂପାୟିତ ହୋଇ ପାରିଛି । କବି ତାଙ୍କ ଗ୍ରନ୍ଥର ମୌଳିକ ଉପାଦାନ ସଂପର୍କରେ କହୁଚନ୍ତି—

"ତୁଳସୀ ଦାସ ବେଦ ପୁରାଣ ବହୁ ଶାସ୍ତ୍ର ଓ ଅନ୍ୟାନ୍ୟ ବିଷୟବସ୍ତୁରୁ ଉପାଦାନ ସଂଗ୍ରହ କରି ନିଜ ଆତ୍ମାର ତୃପ୍ତି ପାଇଁ

ଜନସାଧାରଣଙ୍କ ଭାଷାରେ ଏଇ ମନୋମୁଗ୍ଧକର ରାମ କାହାଣୀ ଲେଖୁଅଛି ।"

ବିଷୟବସ୍ତୁର ମହିମା କବିଙ୍କୁ ଅପାର ତୃପ୍ତି ଦେଇଛି—

"ମୋ କାବ୍ୟରେ ରସର ଅଭାବ ଘଟିପାରେ; କିନ୍ତୁ ମୁଁ ରାମଙ୍କ ଗୌରବ ଗାଥା ବର୍ଣ୍ଣନା କରୁଛି—ଏଇ ଜ୍ଞାନ ହିଁ ମୋ ମନରେ ବିଶ୍ୱାସ ଆଣିଦେଉଛି ଯେ ସତ୍‌ସଂଗ ଦ୍ୱାରା କିଏ ମହିମାମୟ ନ ହୁଏ ? ଧୂଆଁ ପ୍ରକୃତରେ କେତେ ଅସହ୍ୟ; କିନ୍ତୁ ଧୂପର ମଧୁଗନ୍ଧ ମିଶିଲେ ତାହା କେତେ ପ୍ରାଣପ୍ରୀତିକର ବୋଧ-ହୁଏ ! ମଳୟ ପର୍ବତର ସାହଚର୍ଯ୍ୟରେ ଆସି ଚନ୍ଦନ କାଠ ପୂଜା ପାଉଛି । କେବଳ ଖଣ୍ଡିଏ କାଠ ଭାବରେ କାହା ପାଖରେ ଏହାର ମୂଲ୍ୟ ରହନ୍ତା ନାହିଁ !"

ସମସ୍ତଙ୍କର ଆଶିଷ ସେ ଭିକ୍ଷା କରୁଚନ୍ତି—

"କି ଜଡ଼ କି ଚେତନ ସବୁଠି ରାମ ବାସ କରୁଚନ୍ତି । ଏହା ଜାଣି ମୁଁ ସକଳର ପଦ୍ମପାଦରେ କୃତାଞ୍ଜଳିପୁଟରେ ପ୍ରଣାମ କରୁଛି । ଦେବତା, ରାକ୍ଷସ, ସର୍ପ, ପକ୍ଷୀ, ଭୂତପ୍ରେତ, ପିତୃ ପିତାମହ, ଗନ୍ଧର୍ବ, ନିଶାଚର ସମସ୍ତେ ମୋ ପ୍ରତି ସଦୟ ହୁଅ ! ଚଉରାଶି ଲକ୍ଷ ଜୀବ ଚାରିଟି ରୂପରେ ଜଳ ସ୍ଥଳ ଆକାଶ ସର୍ବତ୍ର ବାସ କରୁଚନ୍ତି । ସର୍ବତ୍ର ଏବଂ ସମସ୍ତଙ୍କଠାରେ ସୀତା ରାମ ପରିବ୍ୟାପ୍ତ; ମୁଁ ତେଣୁ ସମସ୍ତଙ୍କୁ କୃତାଞ୍ଜଳିପୁଟରେ ନମସ୍କାର କରୁଛି ।"

ମାନସର କେତେଗୁଡ଼ିଏ ବର୍ଣ୍ଣନାତ୍ମକ ପଂକ୍ତି ଅତୀବ ଉତ୍କୃଷ୍ଟ । ରାମଲକ୍ଷ୍ମଣ ଯେତେବେଳେ ଜନକ ରାଜାଙ୍କ ପୁଷ୍ପ-ଉଦ୍ୟାନରେ ପ୍ରବେଶ କଲେ, ସୀତାଙ୍କର ଅନୁଭୂତି ସେତେବେଳେ କିପରି ଥିଲା ନିମ୍ନସ୍ଥ କବିତାରେ ତାହା ପ୍ରକାଶିତ ।

"ରାଜକୁମାରମାନେ କେଉଁଆଡ଼େ ଗଲେ ବୋଲି ଆଶ୍ଚର୍ଯ୍ୟ ହୋଇ ସୀତା ଚାରିଆଡ଼କୁ ଉତ୍କଣ୍ଠିତ ହୋଇ ଚାହୁଁଛନ୍ତି, ତାଙ୍କର ମୃଗନେତ୍ରର ଚାହାଣି ଯେ ପର୍ଯ୍ୟନ୍ତ ପଡ଼ୁଛି ସେଠାରେ ସତେ ଯେପରି ଶ୍ୱେତପଦ୍ମସମୂହ ବୃଷ୍ଟି ହୋଇ-ଯାଉଛି । ସୀତାଙ୍କ ସଖୀମାନେ ସୀତାଙ୍କୁ ଦେଖାଇଦେଲେ ଯେ ଶ୍ୟାମଳ କାନ୍ତି ଏବଂ ଗୌର କାନ୍ତି ରାଜକୁମାର ଦୁଇଜଣ ଲତା ଆଢ଼ୁଆଳରେ ଗୋଟିଏ ସ୍ଥାନରେ ଦଣ୍ଡାୟମାନ ହୋଇଛନ୍ତି । ସୀତା କେତେ ପ୍ରଲୁବ୍ଧ ଚାହାଣି ତାଙ୍କ ସେଇ ମୁଗ୍ଧ ରୂପକୁ ଚାହିଁ ରହିଛନ୍ତି । ହଜିଯାଇଥିବା କୋଟିନିଧି ଫେରିପାଇଲା ପରି ତାଙ୍କର ହୃଦୟ ପୁଲକିତ ହୋଇଉଠିଲା । ରାମଙ୍କ ରୂପଦର୍ଶନରେ ତାଙ୍କ ନେତ୍ରଯୁଗଳ ସ୍ତମ୍ଭିତ ହୋଇଗଲା; ଚକ୍ଷୁରେ ପଲକ ପଡ଼ିଲା ନାହିଁ । ସୀମାହୀନ ମମତାରେ ସେ ଏତେ ମଜ୍ଜିଗଲେ ଯେ ତାଙ୍କର ସର୍ବାଙ୍ଗ ଅସ୍ଥିର ହୋଇ ଉଠିଲା । ଶୀତ ରାତିରେ ଚକୋର ଚନ୍ଦ୍ରଙ୍କୁ ସ୍ଥିରଦୃଷ୍ଟିରେ ଚାହିଁଲା ପରି ସେ ତାଙ୍କୁ ଚାହିଁ ରହିଲେ । ସୀତା ତାଙ୍କ ଚକ୍ଷୁପଥରେ ରାମଙ୍କୁ ନିଜ ଅନ୍ତସ୍ତଳକୁ ବରଣ କରି ନେଇ-ଗଲେ ଏବଂ ଅତିଶୀଘ୍ର ଚକ୍ଷୁପଥର କବାଟ ଆଖିପତାଟି ବନ୍ଦ କରିଦେଲେ ।"

ଶିବଧନୁ ଭଗ୍ନ କରିବା ପୂର୍ବରୁ ରାଜା ଜନକଙ୍କ ରାଜଦର-ବାରରେ ଯେଉଁମାନେ ରୁଣ୍ଡ ହୋଇଥିଲେ, ସେମାନେ ରାମଙ୍କୁ କି ଦୃଷ୍ଟିରେ ଦେଖୁଛନ୍ତି—

"ପ୍ରତ୍ୟେକ ବ୍ୟକ୍ତି ନିଜ ନିଜର ମନର ଭାବନା ଅନୁଯାୟୀ ରାମଙ୍କ ମୂର୍ତ୍ତି ଦେଖିବାକୁ ଲାଗିଲେ । ଯୋଦ୍ଧାମାନଙ୍କ ପ୍ରତି ସେ

ଥିଲେ ମୂର୍ତ୍ତିମନ୍ତ ବୀରଭ୍ଭ । କୁଟିଳ-ପ୍ରକୃତିକ ରାଜାମାନେ ଭୟର ମୂର୍ତ୍ତି ସଦୃଶ ତାଙ୍କର ବିରାଟ ରୂପ ଦେଖି ଥରିଉଠିଲେ । ଛଦ୍ମବେଶୀ ଅସୁରମାନେ ଅନୁଭବ କଲେ—କାଳ ଯେପରି ସେମାନଙ୍କୁ ଗ୍ରହଁରହିଚି । ନାଗରିକମାନେ ଦେଖିଲେ—ସେଇ ଦୁଇ ଭାଇ ଜନସମାଜର ଅଳଙ୍କାର ଏବଂ ସେମାନଙ୍କର ଚକ୍ଷୁ କ ଆନନ୍ଦପୂର୍ତ୍ତି । ପ୍ରଫୁଲ୍ଲବଦନା ରମଣୀମାନେ ହୃଦୟରେ ଅନୁଭବ କରୁଥିଲେ, ସତେ ଯେପରି ସେମାନେ ପ୍ରେମ ଓ ସୌନ୍ଦର୍ଯ୍ୟର ଅନନ୍ୟସାଧାରଣ ମୂର୍ତ୍ତି । ଜ୍ଞାନୀମାନେ ଦେଖିଲେ ବହୁମୁଖ, ବହୁପଦ ଓ ବହୁ ଚକ୍ଷୁସହ ପ୍ରଭୁଙ୍କର ବିରାଟ ବିଶ୍ୱରୂପ । ଜନକ ରାଜାଙ୍କର ବନ୍ଧୁବାନ୍ଧବମାନେ ଦେଖିଲେ ସେମାନେ ଯେପରି ତାଙ୍କର ଆତ୍ମୀୟସ୍ୱଜନ । ସେମାନଙ୍କୁ ଦେଖି ଜନକ ରାଜାଙ୍କ ହୃଦୟରେ ବାତ୍ସଲ୍ୟମମତା ଉଦ୍ରେକ ହେଲା । ଯୋଗୀମାନଙ୍କ ଦୃଷ୍ଟିରେ ସେ ଥିଲେ ସ୍ଥିର, ଶୁଦ୍ଧ, ସମଦର୍ଶୀ ସ୍ୱୟଂପ୍ରକାଶ ପରମବ୍ରହ୍ମ । ଭକ୍ତମାନଙ୍କ ଦୃଷ୍ଟିରେ ସେମାନେ ଥିଲେ ସର୍ବଶୁଭଦାତା ଭଗବାନ ।"

ନିମ୍ନସ୍ଥ ପଂକ୍ତିଗୁଡ଼ିକରେ ଲକ୍ଷ୍ମଣଙ୍କର ସରଳ ବିଶ୍ୱାସ ଓ ଗଭୀର ଭକ୍ତି ପ୍ରକାଶ ପାଇଛି, ଯେତେବେଳେ ସେ ରାମଙ୍କ ସହିତ ଯୁକ୍ତି କରୁଚନ୍ତି ଯେ ତାଙ୍କୁ ତାଙ୍କ ସଂଗରେ ବନଗମନ ହେବା ଲାଗି ଆଦେଶ ଦିଆଯାଉ ବୋଲି—

"ହେ ପ୍ରଭୁ ! ତୁମର ମୂଲ୍ୟବାନ ଉପଦେଶ ତୁମେ ମୋତେ ଦେଉଛ ! ମୁଁ ଏତେ ଖାଟୁ ଯେ ତାକୁ ସ୍ପର୍ଶ କରିବା ମୋ ପକ୍ଷରେ ସାଧାତୀତ । ଶାସ୍ତ୍ର ଏବଂ ନୀତିରେ ଯେଉଁମାନେ ଅଧିକାରୀ, ଯେଉଁ-ମାନଙ୍କର ଧୈର୍ଯ୍ୟ ଅଛି, ସେଇମାନଙ୍କ ଭଳି ଅନନ୍ୟସାଧାରଣ

ବ୍ୟକ୍ତିମାନେ ତୁମର ଏଇ ଉଚ୍ଚଭାବସମ୍ପନ୍ନ ଉପଦେଶ ଗ୍ରହଣ କରିବାକୁ ଯୋଗ୍ୟ । ତୁମର ସ୍ନେହରେ ପ୍ରତିପାଳିତ ମୁଁ ସାମାନ୍ୟ ଶିଶୁଟିଏ ମାତ୍ର । ଗୋଟିଏ ରାଜହଂସ ମନ୍ଦରପାହାଡ଼ ଏବଂ ସୁମେରୁ-ପାହାଡ଼ର ଭାର ଉତ୍ତୋଳନ କରି ପାରିବ ? ହେ ପ୍ରଭୁ, ମୁଁ ମୋର ଅନ୍ତରର ଗଭୀର ଅନୁଭୂତି ପ୍ରକାଶ କରୁଛି । ମୁଁ ମୋର ଗୁରୁ, ପିତା-ମାତା କାହାକୁ ଜାଣେନା । ଯେତେ ଆତ୍ମୀୟସ୍ୱଜନ ସମ୍ପର୍କ, ଯେତେ ସ୍ନେହ ପ୍ରେମ ବିଶ୍ୱାସର ବନ୍ଧନ ଏ ଧରଣୀ ସହିତ ଜନସମାଜକୁ ବାନ୍ଧି ରଖିଛି ଏବଂ ଯାହା ସବୁ ବେଦରେ ବର୍ଣ୍ଣିତ ହୋଇଛି, ସେ ସମସ୍ତ କେନ୍ଦ୍ରୀଭୂତ ହୋଇଛି ମୋର ପାଇଁ ତୁମର ଅନ୍ତରରେ । ତୁମେ ମୋର ହୃଦୟ ଭିତରେ ବସା ବାନ୍ଧି ରହିଛ । କିନ୍ତୁ ହେ ଦୟା-ସାଗର ! ଚିନ୍ତାରେ, କଥାରେ ଏବଂ କାର୍ଯ୍ୟରେ ତୁମ ପଦଯୁଗଳକୁ ଭକ୍ତି କରିବା ଯାହାର ଏକାନ୍ତ ଉଦ୍ଦେଶ୍ୟ, ତାକୁ ତୁମେ ଛାଡ଼ି ଦେଇ ପାରୁଛ ?"

ଯେତେବେଳେ ମେଘ ବର୍ଷୁଛି, ରାମ ସୀତାଙ୍କୁ ହରାଇ ବସିଛନ୍ତି, ସେତେବେଳେ ପ୍ରାକୃତିକ ସୌନ୍ଦର୍ଯ୍ୟର ବର୍ଣ୍ଣନା ସହିତ ନୀତି-ବିଜ୍ଞାନ କିପରି ମିଶ୍ରିତ ହୋଇ ରହିଛି, ତାହାର କେତୋଟି ପଂକ୍ତି—

"ମେଘ ଯେତେବେଳେ ଆକାଶରେ ଗର୍ଜନ କରି ଘୋଟି-ଆସୁଛି, ମୋର ପ୍ରିୟତମା ସୀତାର ବିରହରେ ମୁଁ କାତର ହୋଇ ପଡ଼ୁଛି । ମେଘଦେହରେ ଘନଘନ ବିଜୁଳି ମାରୁଛି, ଯେପରି ଖଳ ବ୍ୟକ୍ତିର ବନ୍ଧୁତ୍ୱରେ ସ୍ଥିରତା ନାହିଁ । ମେଘମାନେ ନଇଁପଡ଼ୁଛନ୍ତି ପୃଥିବୀର ସମତଳ ଅଞ୍ଚଳରେ ବର୍ଷା କରିବାପାଇଁ, ଯେପରି ଜ୍ଞାନୀମାନେ ଜ୍ଞାନ ଆହରଣ କରି ନମ୍ରତା ପ୍ରକାଶ କରନ୍ତି । ବୃଷ୍ଟିପାତର ଆଘାତ

ପଣ୍ଡିତମାନେ ସହୁଚନ୍ତି, ଯେପରି ସଜ୍ଜନମାନେ ଖଳବ୍ୟକ୍ତିର ବଦ୍ଧୃତ ସହିଯାନ୍ତି । ପୃଥିବୀ ମାଟିର ସଂସ୍ପର୍ଶରେ ଆସି ବର୍ଷାଜଳ ଗୋଳିଆ ହୋଇଯାଏ, ଯେପରି ମାୟାରେ ଆଚ୍ଛନ୍ନ ହେଲେ ଆତ୍ମା କଳୁଷିତ ହୁଏ । ନଦୀଜଳ ସମୁଦ୍ର ସଙ୍ଗରେ ମିଶିଲେ ସ୍ଥିର ହୋଇଯାଏ, ଯେପରି ଆତ୍ମା ପରମାତ୍ମା ସହିତ ମିଶିଲେ ଚିରଶାନ୍ତି ଲଭ କରେ ।"

ଶତ୍ରୁ ଶିବିରରୁ ଆସି ବିଭୀଷଣ ରାମଙ୍କ ପାଖେ ଆଶ୍ରୟ ନେଇଚନ୍ତି । ରାମ ବିଭୀଷଣଙ୍କୁ ଆଶ୍ୱାସନାର ବାଣୀ ଶୁଣାଉଚନ୍ତି—

"ଜଣେ ବ୍ୟକ୍ତି, କି ଜଡ଼, କି ଚେତନ ସମଗ୍ର ଜଗତର ଶତ୍ରୁ ହୋଇପାରେ; କିନ୍ତୁ ଯେଉଁ ମୁହୂର୍ତ୍ତରେ ସେ ଅହଙ୍କାର, ମାୟା, କପଟତା ଓ ଶଠତା ତ୍ୟାଗ କରି ମୋ ପାଖରେ ଆତ୍ମସମର୍ପଣ କରେ, ମୁଁ ତାକୁ ଗୋଟିଏ ସାଧୁପୁରୁଷରେ ପରିଣତ କରିଦିଏ । ଯେଉଁ ବ୍ୟକ୍ତି ତାର ବାପ, ମାଆ, ଭାଇ, ଭାରିଯା, ଦେହ, ଧନ, ଘର, ବନ୍ଧୁ, କୁଟୁମ୍ବ—ଏ ସକଳର ସ୍ନେହର ଖିଅକୁ ଏକାଠି କରି ଗୋଟିଏ ବଡ଼ ଦଉଡ଼ି ବୁଣେ ଏବଂ ତଦ୍ଦ୍ୱାରା ମୋତେ ବାନ୍ଧିରଖେ ଏବଂ ଯିଏ ସମଦର୍ଶୀ କାମନାହୀନ ଓ ସୁଖ ଦୁଃଖ ଉପରେ ଅବିଚଳିତ, ସେଇପରି ସାଧୁ ବ୍ୟକ୍ତି କୃପଣର ଧନ-ସମ୍ପଦପରି ମୋ ହୃଦୟ ଭିତରେ ବାସ କରେ । ସାଧୁପୁରୁଷମାନେ ମୋର ସବୁଠୁ ଅତି ପ୍ରିୟ । ସେମାନଙ୍କ ପାଇଁ ମୁଁ ନରରୂପ ଧାରଣ କରିଥାଏ; ଆଉ କୌଣସି କାରଣ ପାଇଁ ନୁହେଁ ।"

ଯୁଦ୍ଧକ୍ଷେତ୍ରରେ ରାବଣ ତା' ରଥରେ ଭଲଭାବରେ ଅସ୍ତ୍ର-ଶସ୍ତ୍ରରେ ସଜ୍ଜିତ ହୋଇ ବସିଚି । କିନ୍ତୁ ରାମ ବଡ଼ ଅସୁବିଧାଜନକ ପରିସ୍ଥିତିରେ ରହିଚନ୍ତି । ଏହା ଦେଖି ବିଭୀଷଣ ବ୍ୟସ୍ତ ହୋଇ

ପଡ଼ୁଚନ୍ତି । ତାଙ୍କ ଆଗରେ କେଉଁ ପ୍ରକାର ଅସ୍ତ୍ରବଳରେ ପ୍ରକୃତ ବିଜୟ ଲାଭ ହୁଏ, ସେ କଥା ରାମ ବର୍ଣ୍ଣନା କରୁଚନ୍ତି--

"ଦୟାମୟ ପ୍ରଭୁ କହୁଚନ୍ତି—ହେ ବନ୍ଧୁ, ଶୁଣ ! ମୋର ଯେଉଁ ରଥ ଯୁଦ୍ଧରେ ବିଜୟବରଣ କରି ଆଣିବ, ତାହା ଭିନ୍ନ ଉପାଦାନରେ ଗଢ଼ା । ସାହସ ଏବଂ ଧୈର୍ଯ୍ୟ ସେ ରଥର ଚକ । ସତ୍ୟ ଏବଂ ନୀତି ତାହାର ପତାକା । ବଳ, ବିବେକ, ସଂଯମ, ଜନ-ମଙ୍ଗଳ—ଏଗୁଡ଼ିକ ତାହାର ଅଶ୍ୱ । ଏହି ଅଶ୍ୱମାନେ ଦାନ, ଦୟା, ସାମ୍ୟର ରଜ୍ଜୁରେ ସେହି ରଥ ସହିତ ବନ୍ଧା ହୋଇଚନ୍ତି । ଭକ୍ତି ସେ ରଥର ସୁଦକ୍ଷ ସାରଥୀ । ନିଃସ୍ୱାର୍ଥପରତା ହେଉଚି ଢାଲ । ସନ୍ତୋଷ ଖଡ୍‌ଗ, ଦାନ କୁଠାର, ବୁଦ୍ଧି ପ୍ରଚଣ୍ଡ ଶକ୍ତି, ଉନ୍ନତ ମନ—ଭୟଙ୍କର ଧନୁ, ପବିତ୍ର ଓ ସ୍ଥିର ହୃଦୟ—ଶର-ମୁଣା ଏବଂ ଶର ହେଉଚି ସାମ୍ୟ, ଶୃଙ୍ଖଳା ଏବଂ ଆତ୍ମସଂଯମ । ଗୁରୁ ଏବଂ ବ୍ରାହ୍ମଣଙ୍କ ପ୍ରତି ପୂଜା ହେଉଚି ଦୁର୍ଭେଦ୍ୟ କବଚ । ସଂଗ୍ରାମରେ ବିଜୟଲାଭ ପାଇଁ ଏ ସବୁରୁ ବଳି ଉତ୍କୃଷ୍ଟତର ଅସ୍ତ୍ର ନାହିଁ । ହେ ମୋର ବନ୍ଧୁ! ଏଇ ପ୍ରକାର ରଥରେ ଯେଉଁ ବ୍ୟକ୍ତି ବସିଚି ତାର କେହି ଶତ୍ରୁ ନାହାନ୍ତି, ଯାହାଙ୍କୁ ସେ ଜୟ କରି ନ ପାରିବ ।"

## ଦୋହାବଳୀ

ଦୋହାବଳୀ ୫୭୩ଟି ପଦର ସମଷ୍ଟି । କେତେଗୁଡ଼ିଏ ପଦରେ ଜୀବନ ଓ ତାର ରୀତିନୀତି ସମ୍ପର୍କରେ କବିଙ୍କର ସୂକ୍ଷ୍ମଦୃଷ୍ଟି ପରିଲକ୍ଷିତ ହୁଏ ।

"ରାମଙ୍କ କରୁଣା ପ୍ରମାଣ କରିବା ପାଇଁ ଯଥେଷ୍ଟ ଉପାଦାନ ରହିଛି । କାରଣ ସ୍ୱର୍ଣ୍ଣ ଓ ମଣିମାଣିକ୍ୟ ଦୁର୍ଲ୍ଲଭ । କିନ୍ତୁ ନଡ଼ା, ପାଣି, ରବିଶସ୍ୟ (ଜୀବନଧାରଣ ପାଇଁ ଯାହା ନିତାନ୍ତ ଦରକାର) ସହଜରେ ପ୍ରାପ୍ତ ହୁଏ ।"

"ଆମେ ଯେବେ ଘରଟିଏ ଏଠାରେ ତୋଳିବା (ସଂସାରି ଲୋକ ଭାବରେ), ଆମେ ଆମର ପ୍ରକୃତ ଘରଟିକୁ (ଆଧ୍ୟାତ୍ମିକ ଘର) ହରାଇ ବସିବା । ଆମେ ଯେବେ ଘର ଛାଡ଼ି (ସାମାଜିକ ଦାୟିତ୍ୱ) ଚାଲିଯିବା, ତେବେ ପୁଣି ଆମ ଘରଟି ଭାଙ୍ଗିଯିବ । ମୋ ମତରେ ସବୁଠୁ ଉତ୍କୃଷ୍ଟ ପନ୍ଥା ହେଉଛି, ରାମଙ୍କ ନଗରୀରେ ବାସ କରିବା । ଏହି ରାମନଗରୀ ଘର ଏବଂ ଅରଣ୍ୟର ମଝିବାଟରେ ଅବସ୍ଥିତ ।"

"ରାଜା ଭୁଣ୍ଡପରି ହେବା ଉଚିତ । ଖାଇବା ପିଇବା ଉଦ୍ଦେଶ୍ୟରେ ଭୁଣ୍ଡ ଗୋଟିଏ ହୋଇ ରହିଛି । କିନ୍ତୁ ଏହା ସତ୍ତ୍ୱେ ଭୁଣ୍ଡ କେଡ଼େ ବିଜ୍ଞତାର ଭାବରେ ଦେହର ଅଙ୍ଗପ୍ରତ୍ୟଙ୍ଗମାନଙ୍କୁ ପରିପୋଷଣ କରୁଛି !"

"ସଂସ୍କୃତରେ ଲେଖା ହେଉ କିମ୍ବା ଜନସାଧାରଣଙ୍କ ଭାଷାରେ ଲେଖାଯାଉ, ସେଥିରେ ଯାଏ-ଆସେ କଣ ? ପ୍ରକୃତ ପ୍ରେମ ହିଁ କେବଳ ଆବଶ୍ୟକ । ଯଦି ଖଣ୍ଡେ କମ୍ବଳ ଖୁବ୍ ଭଲ କାମ ଦେଉଛି, ଗୋଟାଏ ଶାଲ୍‌ର ଆବଶ୍ୟକତା ବା କ'ଣ ଅଛି ?"

## ବରବୈ ରାମାୟଣ

ବରବୈ ରାମାୟଣରେ ରାମ କାହାଣୀ ବରବୈ ଛନ୍ଦରେ ଲିଖିତ । ଏହି ଛନ୍ଦ ଲଳିତ ଓ ସଙ୍ଗୀତରସାତ୍ମକ ହୋଇଥିବାରୁ ସୂକ୍ଷ୍ମ ଅନୁଭୂତିର ପ୍ରକାଶ ପାଇଁ ବିଶେଷ ଭାବରେ ଉପଯୁକ୍ତ ।

"ଚମ୍ପାଫୁଲର ହାରଟି ସୀତାଙ୍କ ଦେହକୁ ବେଶ୍ ମାନୁଚ । କିନ୍ତୁ ତାଙ୍କ ଦେହର ବର୍ଣ୍ଣ ସହିତ ଏପରି ମିଶିଯାଉଚ ଯେ, ଯେତେବେଳେ ଏ ଫୁଲଗୁଡ଼ିକ ମଉଳିଯିବ, ସେତେବେଳେ କେବଳ ଏଗୁଡ଼ିକୁ ଫୁଲ ବୋଲି ଚିହ୍ନିବା ସମ୍ଭବ ହେବ ।"

"ରାମ ! ତୁମେ ତୁମ ରୂପର ଏତେ ଗର୍ବ କର ନାହିଁ । ତୁମର ଯେ ଶ୍ୟାମଳ ବର୍ଣ୍ଣ ମୂର୍ତ୍ତି, ତାହା କେବଳ ସୀତାଙ୍କ ତେଜୋମୟ ରୂପର ଛାୟା ମାତ୍ର ।"

"ମୋ ହୃଦୟ ଭିତରେ ବିରହ-ଅଗ୍ନି ତାର ଶିଖା ମେଲି ଜଳିଲା ମାତ୍ରକେ, ମୋର ଏ ଆଖି ଦୁଇଟି ମୋର ଶତ୍ରୁ ହୋଇ ଉଠିଲେ । କାରଣ ଏ ଦୁଇ ଆଖିର ଲୁହବିନ୍ଦୁ ସେ ଅଗ୍ନିକି ତତ୍କ୍ଷଣାତ୍ ଲିଭାଇ ପକାଇଲେ ।"

## କବିତାବଳୀ

'କବିତାବଳୀ' କେତେଗୁଡ଼ିଏ ଅତ୍ୟନ୍ତ ସରଳ ଓ ସାଙ୍ଗୀତିକ ଗୁଣସମ୍ପନ୍ନ ଚତୁଷ୍ପଦୀ କବିତାର ସମାହାର । ରାମ-କାହାଣୀ ଏବଂ କବିଙ୍କର ନିଜ ଜୀବନ ଓ ଅଭିଜ୍ଞତା ବିଷୟ ଏଥିରେ ବର୍ଣ୍ଣିତ ହୋଇଚ ।

ଅଯୋଧ୍ୟା ନଗରୀର ପ୍ରାଚୀର ତ୍ୟାଗ କରି ସୀତା ବନବାସ ଯିବା ବେଳର ଘଟଣା ଏଇ ପଂକ୍ତିଗୁଡ଼ିକରେ ବର୍ଣ୍ଣିତ ହୋଇଅଛି ।

"ସମସ୍ତ ଧୈର୍ଯ୍ୟ ଓ ମନର ବଳ ଘେନି ରଘୁବଧୂ ନଗର ବାହାରକୁ ଦି'ପାଦ ଆସିଚନ୍ତି ବନବାସ-ପଥରେ ଯାତ୍ରା କରିବା ଲାଗି । ତାଙ୍କ କପାଳ କାନ୍ତିମୟ ସ୍ୱେଦବିନ୍ଦୁରେ ଆଚ୍ଛନ୍ନ ହୋଇଗଲା ।

ମଧୁମୟ ଓଷ୍ଠଯୁଗଳ ଶୁଷ୍କ ହୋଇ ଆସିଲା । ତା' ପର ମୁହୂର୍ତ୍ତରେ ସେ ରାମଙ୍କୁ ପଚାରିଲେ, 'ଆମକୁ ଆଜ କେତେ ଦୂର ଚାଲିବାକୁ ହେବ ? କେଉଁଠି ତୁମର ପତ୍ର-କୁଡ଼ିଆଟି ତୁମେ ତିଆରିବ ?' ପତ୍ନୀଙ୍କର ଏ ଆକୁଳତା ଓ ଉତ୍କଣ୍ଠା ଲକ୍ଷ୍ୟ କରି ତାଙ୍କ ସ୍ୱାମୀଙ୍କ (ରାମଙ୍କ) ଆଖିରୁ ଲୁହବନ୍ଦ ଝରିବାକୁ ଲାଗିଲା ।"

ରାମ ଓ ସୀତା ବଣ ଭିତରେ ଚାଲିଚନ୍ତି । କେତେଗୁଡ଼ିଏ ଗାଉଁଲି ସ୍ତ୍ରୀଲୋକ ସୀତାଙ୍କଠାରୁ ଜାଣିବାକୁ ଚାହିଁଲେ ଯେ ତାଙ୍କ ସଙ୍ଗରେ ଥିବା ରାଜକୁମାର ଜଣକ ତାଙ୍କର କିଏ ହେବେ ?

"ସୀତା ଗ୍ରାମ୍ୟ ସ୍ତ୍ରୀଲୋକମାନଙ୍କର ଅମୃତତୁଲ୍ୟ ମଧୁର କଥା ଯେତେବେଳେ ଶୁଣିଲେ, ସେ ବୁଝିପାରିଲେ ହଠାତ୍ ସେମାନଙ୍କର ଚତୁର ପ୍ରଶ୍ନର ଉଦ୍ଦେଶ୍ୟ । ସେ ଟିକିଏ ଆଡ଼ଚାହାଣିରେ ଚାହିଁ, ସେମାନେ ବୁଝିପାରିଲା ଭଳି ଆଖିରେ ଠାରିଦେଲେ; ଆଉ ମୁରୁକି-ହସା ଦେଇ ଆଗକୁ ଚାଲିଲେ । ଶ୍ରୀରାମଙ୍କୁ ମୁଗ୍ଧନେତ୍ରରେ ଦେଖି ସେଇ ଗ୍ରାମ୍ୟ ରମଣୀମାନେ ଉତ୍‌ଫୁଲ୍ଲ ହୋଇଉଠିଲେ । ମନେହେଲା ଯେପରି ସୂର୍ଯ୍ୟୋଦୟ ସ୍ପର୍ଶରେ ପଦ୍ମ-କଳିକାଗୁଡ଼ିକ ପ୍ରେମ-ସରୋବରରେ ଫୁଟିଉଠୁଛି !"

ଏଠାରେ ଲଙ୍କାପୋଡ଼ର ଗୋଟିଏ ଧୂମାୟମାନ ଚିତ୍ର ଦିଆ-ଯାଉଛି—

"ନିଆଁ ଲାଗିଲା ! ନିଆଁ ଲାଗିଲା ! ନିଆଁ ନିଆଁ—ଏହିପରି ଚିତ୍କାର କରି ଲୋକମାନେ ଭୟରେ ଏଣେତେଣେ ଧାଁଧପଡ଼ କରୁଚନ୍ତି । ମାଆ ଝିଅକୁ, ବାପ ପୁଅକୁ ଦେଖୁନି; କିଏ କେଉଁଠି ଅଛନ୍ତି । ଧୂଆଁରେ ସେମାନଙ୍କର ଆଖି ଚୁନ୍ଧି ହୋଇଯାଉଛି । କେଶ ମୁକୁଳା, ଲୁଗାପଟା ପିନ୍ଧିବାର ଠିକଣା ନାହିଁ; କି ବୁଢ଼ା କି ଟୋକା

ସମସ୍ତେ ପାଣି ପାଇଁ ଚିତ୍କାର କରୁଛନ୍ତି । ଘୋଡ଼ାଗୁଡ଼ାକ ବୋବାଳି ଛାଡ଼ି ଖୁଲିଗଲେଣି । ହାତୀଗୁଡ଼ାକ ଗର୍ଜନ କରି ଲୋକଗହଳି ଭିତରେ ଠେଲି ପେଲି ପଶି ଲୋକମାନଙ୍କୁ ପାଦରେ ଦଳିଚକଟି ଚାଲିଛନ୍ତି । ଉପରେ ତାଟକା ଡେଇଁ ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ପଚାରୁଛନ୍ତି, 'ଆମେ ଏଇ ଜଳନ୍ତା ନିଆଁରେ, ଚୁଲିରେ ଶିଝିଲିପରି ଶିଝି ହେଉଛେ !"

ଏଇ କେତୋଟି ପଂକ୍ତିରେ କବି ତାଙ୍କ ପ୍ରାଥମିକ ଜୀବନକୁ ଆଖି ଫେରେଇ ଦେଖୁଛନ୍ତି—

"କ୍ଷୁଧାର ଜ୍ୱାଳାରେ ପଡ଼ି ତତେ ଭିକ ମାଗିବାକୁ ପଡ଼ିଲା କି ଉଚ୍ଚ ଜାତି କି ନୀଚ ଜାତି ସବୁ ଲୋକଙ୍କ ଦୁଆରେ ! ଏଇ ପୃଥିବୀ ତା' ଜାଣିଚି; ରାମଙ୍କର ଲୋକ ଭାବରେ ତୁ ଖ୍ୟାତି ଅର୍ଜନ କରିଥିଲୁ । କିନ୍ତୁ ସେଇ ଖ୍ୟାତି ଅନୁରୂପେ ତୁ ଚଳିଲୁ ନାହିଁ । ଦୁର୍ଶ୍ଚିନ୍ତା, ଦୁର୍ଦ୍ଦଶା, ଦୁଷ୍କର୍ମରେ ତୁ ମାତିଉଠିଲୁ । କିନ୍ତୁ ରାମନାମର ଶକ୍ତି, ରାମନାମର ପ୍ରଭାବ ଏବଂ ରାମନାମର ଗରିମା ଉପରେ ଆଖି ପକାଇ ଚାହାଁ । ତୁଳସୀ ! ଏବେ ତତେ ଲୋକେ ସ୍ୱାଗତ କରୁଛନ୍ତି ବାଲ୍ମୀକି ଋଷିପରି; ଯଦିଚ ତୁ ଏଭଳି ଗୋଟିଏ ବିରାଟ ଆଶ୍ଚର୍ଯ୍ୟ ଦେଖି-ପାରିଲୁ । ରେ ହତଭାଗା ମୂର୍ଖ ! କାହିଁକି ରାମପ୍ରେମ ସହ ଦୃଢ଼ଭାବରେ ତୁ ନିଜେ ବିଜଡ଼ିତ ରହୁନୁ !"

ସେ ଅନୁତାପ କରୁଛନ୍ତି—

"ଭରତ ! ତୁମେ ଏଇ ସୁନ୍ଦର ଦେଶରେ, ସୁନ୍ଦର ପରିବାର ଭିତରେ ସୁନ୍ଦର ବ୍ୟକ୍ତିତ୍ୱ ଓ ସୁନ୍ଦର ସମାଜର ସବୁ ସମ୍ପଦ ଧରି ଜନ୍ମଲାଭ କରିଚ । ଏଇ ଅବସ୍ଥାରେ ସେଇ କେବଳ ବିଜ୍ଞ ଯେ କ୍ରୋଧ ଏବଂ କଟୁଭାଷା ବର୍ଜନ କରିପାରିବ ଏବଂ ପ୍ରବଳ ବର୍ଷା,

ଭୀଷଣ ଶୀତ, ବାତ୍ୟା ଓ ପ୍ରଚଣ୍ଡ ରୌଦ୍ରର ଯେ ନିଷ୍ଠୁର ଆଘାତ ତାକୁ ସହ୍ୟ କରି ବୃତକ ପକ୍ଷୀ ପରି ଏକନିଷ୍ଠ ଭକ୍ତିରେ ଈଶ୍ବର-ପ୍ରେମରେ ନିଜେ ନିମଗ୍ନ ରହି ପାରିବ । କାରଣ ଆଜି ଯାହା ସବୁ, ତାହା କାମଧେନୁକୁ ସୁନା ଲଙ୍ଗଳରେ ଯୋଚି ଗରଳର ଫସଲ ଉତ୍ପାଦନ କଲା ପରି !”

ତାଙ୍କ ସମୟରେ ସମାଜ ଓ ଜୀବନର ଗତିବିଧିକୁ ଦେଖି ସେ ଦୁଃଖ ପ୍ରକାଶ କରୁଚନ୍ତି—

“ଆଜି ସମସ୍ତେ ପେଟ ପାଇଁ ଲାଗିଚନ୍ତି । କିଏ ଶିକ୍ଷା ପାଉଚନ୍ତି କିମ୍ବା ବିଭିନ୍ନ ପ୍ରକାର ଉପାୟର ଆଶ୍ରୟ ନେଉଚନ୍ତି କିମ୍ବା ପାହାଡ଼ ପର୍ବତ ଚଢ଼ୁଚନ୍ତି କିମ୍ବା ନିବିଡ଼ ଜଙ୍ଗଲ ଭିତରେ ଶିକାର ଖୋଜି ବୁଲୁଚନ୍ତି । ସମାଜର ସକଳ ଶ୍ରେଣୀ ପ୍ରତି ଏହା ପ୍ରଯୁଜ୍ୟ । ସେମାନେ ହେଉଚନ୍ତି—ଶ୍ରମିକ, କୃଷକ, ବଣିକ, ଭିକ୍ଷୁକ, ଭାଟ, ସେବକ, ଚପଳ ନଟ, ଚୋର, ଦୂତ ଏବଂ ଯାଦୁକର । ସୁନୀତି ବା ଅନୀତି, ସୁକର୍ମ ବା ଦୁଷ୍କର୍ମ ସବୁ ସେମାନେ କରିପାରିବେ । ଏପରିକି, ସେମାନେ ନିଜର ପୁଅଝିଅଙ୍କୁ ମଧ୍ୟ ବିକିଦେଇ ପାରିବେ ସେମାନଙ୍କର ପେଟ ପାଇଁ ! ତୁଳସୀ କହୁଚି, କ୍ଷୁଧାର ଯେ ଜ୍ଵାଳା, ଯେ କୌଣସି ପ୍ରକାର ଅଗ୍ନି ଅପେକ୍ଷା ତାହା ଅଧିକ ମାରାତ୍ମକ ! କେବଳ ସେଇ ଶ୍ୟାମଘନ ଅର୍ଥାତ୍ ରାମ ସେ ଅଗ୍ନିକି ନିର୍ବାପିତ କରିପାରିବେ ।”

ତାଙ୍କ ଅନ୍ତସ୍ତଳର ସଙ୍ଗୀତ ଶୁଣିବାକୁ ମିଳେ, ଯେତେବେଳେ ସେ ନିଜ ସମ୍ପର୍କରେ ଏବଂ ରାମଙ୍କ ସମ୍ପର୍କରେ ଗାଇଚନ୍ତି—

“ଯୋଗୀ, ଭ୍ରମଣକାରୀ, ସାଧୁ ଓ ସେମାନଙ୍କର ଦଳ, ଏମାନେ ସମସ୍ତେ ଜାଗ୍ରତ । କାରଣ ସେମାନେ ଧ୍ୟାନ ପାଇଁ ତତ୍ପର କିମ୍ବା କାମ କ୍ରୋଧ, ମାୟା ଲୋଭରୁ ଅପସୃତ ହେବା ପାଇଁ ଉଦ୍‌ବିଗ୍ନ ।

ରାଜାମାନେ ରାଜକାର୍ଯ୍ୟ ପାଇଁ, ସେମାନଙ୍କ ଅନୁଚରମାନଙ୍କ ପାଇଁ କାରୁକାର୍ଯ୍ୟପୂର୍ଣ୍ଣ ବେଶଭୂଷା କିମ୍ବା ଶତ୍ରୁମାନଙ୍କର ଶତ୍ରୁତାଚରଣ ଖବର ପାଇଁ ଜାଗ୍ରତ । ପଣ୍ଡିତ ଲୋକମାନେ ଜ୍ଞାନ ଅନୁସରଣ କରିବାରେ ଜାଗ୍ରତ । ଲୋଭାସକ୍ତ ବ୍ୟକ୍ତି ଜମିବାଡ଼ି, ଧନ ଏବଂ ଗୃହ ପାଇଁ ଜାଗ୍ରତ । ଭୋଗୀ ଆମୋଦ-ପ୍ରମୋଦ ଖୋଜିବାରେ ଜାଗ୍ରତ । ବିରହୀ ବିରହବେଦନା ଯୋଗୁଁ ଏବଂ ରୋଗୀ ଭଗ୍ନସ୍ୱାସ୍ଥ୍ୟ ଯୋଗୁଁ ଜାଗ୍ରତ । କେବଳ ତୁଳସୀ ସୁନିଦ୍ରା ଭୋଗ କରେ; କାରଣ ରାମଙ୍କ ଉପରେ ତାର ଅଗାଧ ବିଶ୍ୱାସ ରହିଛି ।"

## ବିନୟ-ପତ୍ରିକା

'ବିନୟ-ପତ୍ରିକା' କେତେଗୁଡ଼ିଏ ଭକ୍ତିରସାତ୍ମକ ଗୀତର ସଂଗ୍ରହ । ଏଥିରେ କବିଙ୍କର ଗଭୀର ଆଧ୍ୟାତ୍ମିକ ବାସନାର ଉଲ୍ଲେଖ ରହିଛି । ଏହା ତାଙ୍କର ପରିପକ୍ୱତମ ଉମରପାହ୍ଚରେ ଲେଖାଯାଇଛି । କେତୋଟି ଗୀତର ଅନୁବାଦ ତଳେ ଦିଆଯାଉଛି—

"ହେ ପ୍ରଭୁ ! ତୁମେ ଦୟାମୟ, ମୁଁ ଦରିଦ୍ର; ତୁମେ ଦାତା, ମୁଁ ଭିକାରି; ମୁଁ ମହାପାପୀ, ତୁମେ ପାପବିନାଶକାରି; ଯେଉଁ ସକଳ ବ୍ୟକ୍ତିର କେହି ରକ୍ଷକ ନାହିଁ, ତୁମେ ସେହିମାନଙ୍କର ପ୍ରଭୁ ଓ ରକ୍ଷକ । ମୋ ଭଳି ଅନାଥ କେଉଁଠାରେ ଅଛି ? ମୋଠାରୁ ବଳି ଦୁଃଖୀ କେହି ନାହିଁ; ତୁମେ ଯେଉଁଭଳି ମଣିଷର ଦୁଃଖ ହରଣ କର, ସେପରି କେହି କରିପାରିବେ ନାହିଁ । ତୁମେହିଁ ପରମବ୍ରହ୍ମ । ମୁଁ ଗୋଟିଏ ଆତ୍ମା; ତୁମେ ପ୍ରଭୁ, ମୁଁ ସେବକ । ସବୁ ଦିଗରୁ ତୁମେ ମୋର ପିତା, ମାତା, ସଖା, ଗୁରୁ ଓ ହିତକାମୀ । ତୁମ ମୋ ଭିତରେ ଅନେକ ପ୍ରକାର ବନ୍ଧନ ରହିଛି; ତୁମ ଇଚ୍ଛାନୁଯାୟୀ ମୋତେ ବ୍ୟବହାର କର ।

ତୁଳସୀ ଏତିକି କେବଳ ମାଗୁଛି ଯେ ତାଙ୍କୁ ଯେଉଁ ପ୍ରକାରେ ହେଲେ ମୁକ୍ତିଦାନ କର ।”

“ହେ ମୋର ପ୍ରଭୁ ରଘୁବୀର ! ମୋର ଏଇ ମାଗୁଣି ଶୁଣ ! ମୋର ସମସ୍ତ ଆଶାଭରସା ବିଶ୍ୱାସ ମୁଁ ଅନ୍ୟ ଯେଉଁଠି ରଖିଛି, ତାଙ୍କୁ ସବୁ ନେଇଯାଅ ଏବଂ ମୋର ବ୍ୟକ୍ତିଗତ ଜଡ଼ତା ମଧ ନେଇ ଯାଅ । ମୁଁ ମୁକ୍ତି, ଜ୍ଞାନ, ଧନ, ଅଧ୍ୟାତ୍ମିକ ସିଦ୍ଧି ବା ଗୌରବ ମାଗୁନି । ତୁମର ପାଦପଦ୍ମ ପାଇଁ ମୋର ନିଃସ୍ୱାର୍ଥ ପ୍ରେମ ଦିନ-ଦିନ ଧରି ବର୍ଦ୍ଧିତ ହେଉ, ବିକଶିତ ହେଉ,—ମୁଁ ଏହା ହିଁ କେବଳ ମାଗୁଛି । ନିଷ୍ଠୁର କର୍ମର ତାଡ଼ନାରେ ମୁଁ ଯୁଆଡ଼େ ଟାଣିହୋଇ ଯାଏ ପଛକେ, ମୁଁ ଦ୍ୱନ୍ଦ୍ୱିତ ତୁମେ ତୁମ ସ୍ନେହରୁ ମୋତେ ମୁହୂର୍ତ୍ତକ ପାଇଁ ବଞ୍ଚିତ କରିବ ନାହିଁ, ଯେମିତି କଇଁଛ ତା ଅଣ୍ଡାମାନଙ୍କୁ ଛାଡ଼ି ଯାଇପାରେନା ! ସ୍ନେହ, ପ୍ରେମ, ସକଳ ସମ୍ପର୍କ ଯାହା ଏ ମର-ଦେହକୁ ଏଇ ପୃଥିବୀ ସହିତ ବାନ୍ଧିରଖିଛି, ସବୁ ଠୁଳ ହୋଇ, ମୋର ପ୍ରଭୁ ମୋର ସ୍ୱାମୀଙ୍କ ଆଡ଼କୁ ଗତି କରୁ—ଏଇ ହେଉଛି ତୁଳସୀ ଦାସର ମାଗୁଣି ।”

“ଭକ୍ତର ଦୟାମୟ ପ୍ରଭୁ ଓ ରକ୍ଷକ ହେ ରଘୁବୀର ! ମୋର ମନକୁ ସ୍ପର୍ଶ କରେ ଯେ ତୁମ କୃପା ବିନା ମୋହ ମାୟା କେବେ ଦୂରୀଭୂତ ହୋଇପାରେନା । ବାକ୍ୟ-ଜ୍ଞାନରେ କେବଳ ନିପୁଣ ହୋଇ କେହି ବ୍ୟକ୍ତି ଏଇ ବୈତରଣୀ ଭବ ସାଗରକୁ ପାର ହୋଇପାରେନା । ରାତିରେ ଯେଉଁ ବ୍ୟକ୍ତି ଅନ୍ଧକାରମୟ କୋଠରି ଭିତରେ ଆବଦ୍ଧ ହୋଇ, ଆଲୁଅ ଏବଂ ଦୀପ ସମ୍ବନ୍ଧରେ କେବଳ ଆଲୋଚନା କରେ; ତାହାଦ୍ୱାରା ଅନ୍ଧକାର ଦୂରୀଭୂତ ହୋଇଯିବ ନାହିଁ । ପୁଷ୍ଟିକର ଉପାଦେୟ ଖାଦ୍ୟ ବିନା ଯେଉଁ ଦୀନଦୁଃଖୀମାନେ କଷ୍ଟ ପାଆନ୍ତି,

ସେମାନଙ୍କର ଦାରିଦ୍ର୍ୟ ଘୁଞ୍ଚିବ ନାହିଁ, ଯେବେ କଳ୍ପତରୁ ବା କାମଧେନୁର ଚିତ୍ର କାନ୍ଥମାନଙ୍କରେ ଅଙ୍କନ କରାଯାଏ, କଥା ପଦଟିଏ ନ କହି ପଚ୍ଛକେ, ଉତ୍କୃଷ୍ଟ ଭୋଜନର ତୃପ୍ତି ସେ ଜାଣେ, ସେ ତାହା ଖାଏ । ଷଡ଼ରସ ଭୋଜନର କଥା ସେ ଯେବେ ଦିନରାତି କେବଳ କହେ, ତାହାଦ୍ୱାରା ତାର କିଛି ଉପକାର ହେବନି । ତୁଳସୀ ଦାସ କହୁଚି ଯେ, ଯେତେଦିନ ପର୍ଯ୍ୟନ୍ତ ହୃଦୟ ଆଲୋକିତ ହୋଇନାହିଁ ଏବଂ ବୈଷୟିକ ପୃଥିବୀର କାମନା ମନ ଉପରେ ତାର ପ୍ରଭାବ ବିସ୍ତାର କରିଚାଲିଛି, ଯେତେଦିନ ପର୍ଯ୍ୟନ୍ତ ପ୍ରକୃତ ସୁଖ ସ୍ୱପ୍ନରେ ସୁଦ୍ଧା ମିଳି ପାରିବ ନାହିଁ ଏବଂ ଏଇ ଜୀବାତ୍ମା ଅଶେଷ ପାର୍ଥିବ ଅବତାର ଗ୍ରହଣପୂର୍ବକ ଭ୍ରମଣ କରି ଚାଲିଥିବ ।"

ଏପର୍ଯ୍ୟନ୍ତ ମୋ ଜୀବନ ନଷ୍ଟ ହୋଇ ଆସିଚି । ଆଉ ଏଣିକି ମୋ ଜୀବନକୁ ଧ୍ୱଂସପଥରେ ଗତି କରିବାକୁ ଛାଡ଼ିବି ନାହିଁ । ରାମଙ୍କ କୃପାବଳରେ ଭବ-ସଂସାରର ରାତି ପାହି ଆସିଲାଣି । ମୁଁ ପୂର୍ଣ୍ଣ ଭାବରେ ଜାଗ୍ରତ । ପୁନଶ୍ଚ ନିଦ୍ରାଭିଭୂତ ହେବାକୁ ଯିବି ନାହିଁ । ରାମନାମ-ମଣି ପାଇ ତାକୁ ହୃଦୟକନ୍ଦର ଭିତରୁ ଖସିଯିବା ଲାଗି ଛାଡ଼ିବି ନାହିଁ । ମୋ ପ୍ରଭୁଙ୍କର ବିଶୁଦ୍ଧ ଏବଂ ସ୍ପଷ୍ଟରୂପର ଶ୍ୟାମଳବର୍ଣ୍ଣ ସ୍ପର୍ଶମଣି ସହିତ ମୋ ହୃଦୟସ୍ୱର୍ଣ୍ଣକୁ ଘଷିତ କରିବି । ମୋର କର୍ମ-ଶକ୍ତି ଯେତେଦିନ ପର୍ଯ୍ୟନ୍ତ ଅନ୍ୟମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଥିଲା, ମୁଁ ସେତେଦିନ ପର୍ଯ୍ୟନ୍ତ ସେମାନଙ୍କ ଦ୍ୱାରା ହାସ୍ୟାସ୍ପଦ ହୋଇଥିଲି । ବର୍ତ୍ତମାନ ସେ ସବୁ ମୋର ଆୟତ୍ତାଧୀନ । ମୁଁ ଆଉ ଉପହାସର ପାତ୍ର ହୋଇ ରହିବି ନାହିଁ । ମୁଁ ଆଜଠାରୁ ସଂକଳ୍ପ କରୁଚି, ମୋର ହୃଦୟ ମଧୁପ ସଦୃଶ ରାମଙ୍କ ପଦ୍ମପାଦ ସହିତ ଚିରଦିନ ଲାଗିରହିବ ।"

Printed at Bharat Mudranalaya 1/11835 Panchsheel Garden Navin Shahdara Delhi-110032